କଲଚରାଲ୍ ଏକାଡେମୀର
ଦ୍ୱିତୀୟ ଲୋକନାଟକ ମହୋତ୍ସବ ପ୍ରତିଯୋଗୀତାରେ ପୁରସ୍କୃତ ନାଟକ

ନାଟକ :

# ଗୁଣ୍ଡା

ରଚନା—ଅଧ୍ୟାପକ ରମେଶ ପାଣିଗ୍ରାହୀ




ଓଡ଼ିଶା ବୁକ୍ ଷ୍ଟୋର

ଗୁଣ୍ଡୀ

ଲେଖକ :
ରମେଶ ପାଣିଗ୍ରାହୀ

ପ୍ରକାଶକ :
ଗୋବର୍ଦ୍ଧନଚରଣ ପାଢ଼ୀ
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :
ବୁଦ୍ଧ ପୂର୍ଣ୍ଣିମା—୧୯୭୮

ମୁଦ୍ରଣ :
ନନ୍ଦକିଶୋର ପ୍ରେସ, କଟକ-୨

ମୂଲ୍ୟ : [illegible] ଟଙ୍କା [illegible]
ବଢ଼େଇ ଏକ ଟଙ୍କା

ଗୁଣ୍ଡା ଲୋକ-ଜୀବନର ଏକ ବ୍ୟତିକ୍ରମ । ସେ ସମାଜ ଭିତରେ ବାସ କରୁଥିବା ଏକ ଅସାମାଜିକ ବ୍ୟକ୍ତି । ସାଧାରଣ ଶୃଙ୍ଖଳା ଭିତରୁ ଖସିଯାଇ ତାର ବିଦ୍ରୋହୀ ଜୀବନ ଆଉ ଏକ ସମାନ୍ତରାଳ ସମାଜ ଗଢ଼ିବାର ପ୍ରୟାସ କରେ ।

ଅଥଚ ସେ ମଧ୍ୟ ଏକ ମଣିଷ । ସାମାଜିକ ବ୍ୟବସ୍ଥା ଓ ଅଧିକାର ତାର ମୂଲ୍ୟବୋଧମାନଙ୍କର ପରିସୀମିତ୍‌କୁ ଚୂର୍ଣ୍ଣ କରିଦିଏ । ଥରେ ସେ ତଳକୁ ଖସିଗଲେ ପରେ, ଓଲଟା ସୁଅରେ ପହଁରିଲେ ପରେ, ଆଉ ପତର ଭଳି ସୁଅରେ ଭାସିପାରେ ନାହିଁ । ଭାସିବା ପାଇଁ ତାର ଅହଂ ତାକୁ ବାଧାଦିଏ ।

'ବାବ୍‌ଲୁ' ସେମିତି ଏକ ଚରିତ୍ର । ଦୀପେନ୍‌, ସନ୍ତୋଷ, ଲକ୍ଷଣ, ମଣ୍ଟୁ ଓ ଫଜୁଲ୍ ମିଆଁ ର ପରିବେଶ, ରକ୍ତଛୁରୀ, ଓ ୱାଗନ୍‌ଭଙ୍ଗା ଓ ହତ୍ୟାର ବିଭୀଷିକା, ସମାଜର ଆଖି ଉହାଡ଼ରେ ରହିଥିବା ପାପର ଇଲାକା ତାକୁ ଯୋଉ ସ୍ତରକୁ ନେଇ ଯାଇଛି ସେଠୁ ପୁଣି ସ୍ୱୀକୃତ-ସଂସାର ଭିତରକୁ ଫେରିଆସିବାପାଇଁ ଆଉ ବାଟ ନାହିଁ ।

ସେଇ 'ବାଟ' ହୋଇ ତାର ଜୀବନରେ ଆସିଚି କାକଲୀ । ଜଣେ ନାରୀ । ଅନ୍ଧାର ରାତିର ଶେଷ ପ୍ରହରରେ ଝରୁଥିବା ଶିଶିର ଭଳି, ଶୀତ ସକାଳର ଘରେ ଜଳୁଥିବା ଖଣ୍ଡେ ନିଆଁ ର ଉତ୍ତେଇ ଭଳି, ଗ୍ରୀଷ୍ମର ଅଦିନ ବର୍ଷାରେ କଅଁଳି ଉଠୁଥିବା ପଲ୍ଲବ ଭଳି ।

କିନ୍ତୁ ଏସବୁ ବାବ୍‌ଲୁର ଜୀବନର ଅବଦମିତ ସ୍ୱପ୍ନ । ସ୍ୱପ୍ନ ଏକ ସ୍ୱୀକୃତ, ଶୃଙ୍ଖଳିତ, ସାମାଜିକ ସତ୍ୟ । ବାବ୍‌ଲୁ ଓ ତାର ପରିବେଶ ତ.ର ଏକ ପ୍ରତିକୂଳ ସ୍ରୋତର ଯାତ୍ରୀ ।

ତେଣୁ ପାପର ସାମ୍ରାଜ୍ୟ ତାକୁ ପୁଣି ଫେରାଇଆଣିଚି ସେଇ ଅନ୍ଧାର ଭିତରକୁ । ସେଇ ଖସିଯିବା ଭିତରେ ସାମାଜିକ ସଂସାର (ପୁଣି ଏକ ଆଦର୍ଶବାଦୀ ସ୍ୱପ୍ନ)ର ଛଠା ନାହିଁ । ଯେପରିକି ସେଇ ଖସିଯିବାଟା ହିଁ ସତ୍ୟ । ଅନ୍ଧାର ଭିତରେ ହଜି ଯିବାଟା ହିଁ ବାସ୍ତବତା ।

ଏବଂ ସେଇ ବାସ୍ତବତାର କୌଣସି ଉପସଂହାର ନାହିଁ । 'ଗୁଣ୍ଡା', ତେଣୁ, ସାଂପ୍ରତିକ ସମାଜର ଏକ ଅଦରକାରୀ/ ଅସମାହିତ ପ୍ରଶ୍ନ ।

## ଚରିତ୍ର

ସନ୍ତାଶ, ବାବ୍‌ଲୁ, ଲକ୍ଷଣ, ଦୀପେନ୍, ତାମ୍ରପଦ, ବନମଣି, ବାପା ଏବଂ କାକଳୀ ।



## ଏଇ ଲେଖକଙ୍କର

ଧୃତରାଷ୍ଟ୍ରର ଆଖି
ଗୁଣ୍ଡା
ଆତ୍ମଲିପି
ଜଣେ ମହାପୁରୁଷଙ୍କ ଜନ୍ମମୃତ୍ୟୁ ସମ୍ପର୍କରେ
ମୁଁ ଆମ୍ଭେ, ଆମ୍ଭେମାନେ

# ପାଠକମାନଙ୍କ ପାଇଁ

ବ୍ରହ୍ମପୁର ଭେଷଜ ମହାବିଦ୍ୟାଳୟର ୧୯୬୮ ବାର୍ଷିକ ନାଟକୋତ୍ସବ ପାଇଁ ଏଇ ନାଟକଟି ଲେଖା ହୋଇଥିଲା । କିନ୍ତୁ ସେତିକି ବେଳେ ତାହା ନିର୍ବାଚନ ସମିତି ଦ୍ୱାରା ମନୋନୀତ ହୋଇ ନଥିଲା । ପ୍ରଥମ କାରଣ : ଏହାର ଭାଷାରେ ଶାଳୀନତା ନଥିଲା । ସେଇ ସମୟରେ ଏଇ ନାଟକର 'କାକଳୀ' ଚରିତ୍ରକୁ କେନ୍ଦ୍ରକରି ନାଟକର ନାମ ରଖା ଯାଇଥିଲା 'ଅପରିଚିତା' ।

ତା'ପରେ ପାଞ୍ଚ ବର୍ଷର ବ୍ୟବଧାନ ।

ଯା' ଭିତରେ ମୁଁ ୧୯୭୧ ମସିହାରେ ବନ୍ଧୁ ଗୋପାଳରଥଙ୍କୁ ଏଇ କାହାଣୀଟି କହିଥିଲି । ୧୯୭୧ ର ସର୍ବଭାରତୀୟ ଯୁବସମସ୍ୟା ଓ ସାମାଜିକ-ରାଜନୈତିକ ବାତାବରଣ ପାଇଁ ଓ ବିଶେଷ କରି ନାଟକୀୟ ଲୋକ-ଜୀବନର ପ୍ରତିଛବି ଦେଖି ସେ ମତେ ପ୍ରଥମଥର ପାଇଁ କହିଥିଲେ, "ଏଇଟା ହୁଏତ ତମେ ଲେଖିଥିବା ନାଟକ ମାନଙ୍କ ଭିତରେ ସବୁଠାରୁ ଭଲ ।"

ତଥାପି ମୁଁ ସନ୍ଦେହ ଭିତରେ ଥିଲି ।

ତାପରେ ୧୯୭୬ ମସିହାରେ ଲିଙ୍ଗରାଜ ଆଇନ ମହାବିଦ୍ୟାଳୟର ବାର୍ଷିକ ଉତ୍ସବ ପାଇଁ ନାଟକର ଦରକାର ହେଲା ଓ ବନ୍ଧୁ ବାଳକୃଷ୍ଣ ଦାସ ନିର୍ଦ୍ଦେଶନାର ଦାୟିତ୍ୱ ନେଲେ । ତାଙ୍କର ଅନୁରୋଧରେ ଯାର ନାମ ପରିବର୍ତ୍ତିତ ହୋଇ କାର୍ଯ୍ୟ ଆରମ୍ଭ ହେଲା । 'ଗୁଣ୍ଡା' କୁଆଡ଼େ ଲୋକଙ୍କୁ ଭଲ ଲାଗିଥିଲା । ମୁଁ ଦେଖିନାହିଁ ।

୧୯୭୭ ମସିହାରେ ଅଧ୍ୟାପକ ନିହାର ପଟ୍ଟନାୟକ ଏଇ ନାଟକକୁ ହିଞ୍ଜିଳିକାଟୁ ବିଜ୍ଞାନ କଲେଜରେ ପରିବେଷଣ କଲେ । ଗଞ୍ଜାମର ଏକ ପଲ୍ଲୀ ଗାଁରେ ମଧ୍ୟ ଲୋକଙ୍କୁ ନାଟକଟି ଭଲ ଲାଗିଥିଲା । ତାହା ମଧ୍ୟ ଲୋକଙ୍କଠାରୁ ଶୁଣିବା କଥା ।

୧୯୭୮ ମସିହାର ନିଖିଳ ଉତ୍କଳ ଲୋକ-ନାଟକ ଉତ୍ସବ, ରାଉରକେଲା, ପାଇଁ ଏଇ ନାଟକ ମନୋନୀତ ହୋଇଥିଲା ଓ ବନ୍ଧୁ ଭାସ୍କରଚନ୍ଦ୍ର ପାଣିଙ୍କ ନିର୍ଦ୍ଦେଶନା ସେଇ ଉତ୍ସବର ଶ୍ରେଷ୍ଠ ନିର୍ଦ୍ଦେଶନା ବୋଲି ବିବେଚିତ ହେଲା । ବିଭିନ୍ନ ପତ୍ର-ପତ୍ରିକାରୁ ସେଇଠିକାର ସମାଲୋଚକମାନଙ୍କ ମତାମତ ଦେଖିଲି । ଛ' ମାସ ପରେ ମୁଁ ରାଉରକେଲା ଲୋକ ସୂତ୍ରରୁ 'ଗୁଣ୍ଡା' ନାଟକକୁ ପୁଣି ଥରେ ଆବିଷ୍କାର କଲି । ଯା' ଛଡ଼ା ମୁଁ କବି ରତ୍ନାକର ପଣ୍ଡାଙ୍କଠାରୁ ଏକ ଉତ୍ସାହିତ ପତ୍ର ପାଇଛି ଦେଖି ଭାବିଲି, ନାଟକଟିକୁ ଛପେଇ ଦେବା ଉଚିତ ।

ଯଦି ଏଇ ନାଟକର ସାମାଜିକ ଉପଯୋଗୀତା ଥିବ, ତା' ହେଲେ ନୂଆ ନାଟକ ଖୋଜିଲା ବେଳେ ଲୋକେ ଏଇ ବହିଟିକୁ ଖୋଜିବେ ।

॥ ରମେଶପ୍ରସାଦ ପାଣିଗ୍ରାହୀ ॥

ରାଉରକେଲା
୨୫ । ୨ । ୭୮

ରମେଶ ବାବୁ,

ନିଖିଳ ଉତ୍କଳ ଲୋକ ନାଟକ ଉତ୍ସବରେ ଆପଣଙ୍କ 'ଗୁଣ୍ଡା' ନାଟକ ଦେଖି ସାରିବାର ଦୁଇମାସ ପରେ ଏ ଚିଠି ଲେଖୁଛି । ମୋର ତାଜୁଡ଼୍ ଭେ ହଜିଯିବା କିମ୍ବା କୋରସ୍‌ରେ ଲୀନ ହୋଇଯିବା ଅଭ୍ୟାସ ନାହିଁ । ତେଣୁ ଏ ଚିଠି ଏବେ ଲେଖୁଛି ଯେତେବେଳେ ରାଉରକେଲାର ବେପରୁଆ ଫେବୃୟାରୀ ଉତ୍ସେମ୍ବରର ସମସ୍ତ ଝଡ଼ାପତ୍ରକୁ ଫେରେଇ ନେଉଛି.ବୃନ୍ତକୁ । ବିଶ୍ୱାସ କରନ୍ତୁ, 'ଗୁଣ୍ଡା' ନାଟକକୁ ସାମ୍ନା କରିବାର ପରବର୍ତ୍ତୀ ଅନୁଭୂତ ଏକ ନିର୍ଦ୍ଦୟ ମାନସିକ ପତ୍ର-ଝଡ଼ା; ଏକ ଶିକ୍ ପରେ ପୁନଶ୍ଚ ଭୂମିକୁ ଅବରୋହଣ ଏବଂ ନିଜ ଦୃଢ଼ବିଶ୍ୱାସ ଉପରେ ପ୍ରତିଷ୍ଠା ଆକୁଳ କ୍ରନ୍ଦନ ।

ମୁଁ ସୁର୍‌ରିଆଲିଷ୍ଟ, ଦାଦାଇଷ୍ଟ, ଏକଜିସ୍ଟେନ୍‌ସିଆଲିଷ୍ଟ, ନେଗେଟିଭିଷ୍ଟ ଓ ନିଓରୋମାଣ୍ଟିକ୍ ସାହିତ୍ୟର ପାଣି-ଉପତ୍ୟକା ଉପରେ ଏବେ ବି ଠିଆ ହୋଇଛି । ଆପଣ ମୋର ଓ ପୂର୍ଣ୍ଣ ମହାପାତ୍ରଙ୍କର "ଧ୍ୱନିମାନଙ୍କର" ପଢ଼ିଥିବେ । ତାଉଳା ପବନରେ ଊର୍ଦ୍ଧ୍ୱମୁଖ ଚଢ଼େଇ ନିରୁତ୍ତର ହେଲାପରେ ମୁଁ ଉତ୍ତର ଖୋଜୁଛି 'ବାବୁଲୁ—ଗୁଣ୍ଡା' ପ୍ରଶ୍ନର : ଦକ୍ଷିଣ ପୂର୍ବ ଏସିଆ, ଲାଟିନ୍-ଆମେରିକା ଓ ନିଗ୍ରୋଆରବ ଆଫ୍ରିକାର ମନୀଷ ନିଜ ମାଟିରେ ପରୀକ୍ଷା—ନିରୀକ୍ଷା ପୂର୍ବରୁ ଅନ୍ୟମାଟିର ପରୀକ୍ଷିତ ଅନୁସାରହୀନଭାବରେ ଭାବପ୍ରବଣ ଆବିଷ୍କାର ହେବ ନା ନିଜର ଆରମ୍ଭ ଓ ଶେଷ ମଧ୍ୟରେ ଜମାନୀୟ ରକ୍ଷା କରିବ ।

ଅବଶ୍ୟ ଏକଥା କହୁ ରଖୁଛି ଆପଣଙ୍କର ପାଟପନ୍ ଭାରତବର୍ଷର ସମସ୍ତ ନାଇଟକ୍ଲବର ଅନ୍ଧାରେ ଉଠୁଥିବା ଅନାବନା ଗଛଠାରୁ ଭିନ୍ନ ନୁହେଁ । କାକଳୀ ଯେ କୌଣସି ସହର ବସ୍ତିର ଉଦ୍‌ଭ୍ରାନ୍ତା କିମ୍ବା ବ୍ୟଭିଚାରିଣୀ ପ୍ରେମିକାଠାରୁ ଭିନ୍ନ ନୁହେଁ । ବାବୁଲୁର ପରିବେଶରେ ତା'ର ସହସା ପ୍ରଣୟିନୀର ଭୂମିକା ଏହାର ପ୍ରମାଣ ଦିଏ । ଏବଂ ଏକଥା ସତ ଆପଣଙ୍କର ନାଟକରେ ଗଳ୍ପର ବେଗ ଏତେ କ୍ଷିପ୍ର ଯେ ସମସ୍ତ ଚରିତ୍ର, ଏପରିକି ବାବୁଲୁ ନିଜେ, ସମୟେ ସମୟେ କ୍ରୋଧରୁ ମୁକୁଳି ଆସୁଥିବା ଦାର୍ଶନିକ କବିତା-ବସ୍ତୁକୁ ହରାନ୍ତି ।

କିନ୍ତୁ ଏ ସବୁ ସତ୍ତ୍ୱେ ଶେଷ ଦୃଶ୍ୟ, ଯେଉଁଠି ବାବୁଲୁ ଗୁଣ୍ଡା ମହାଭାରତର ବ୍ୟାସସରୋବର କୂଳର ଦୁର୍ଯ୍ୟୋଧନ ଭଳି ଅନ୍ଧାରରେ ନିରନ୍ଧ୍ର ଗୋଟିଏ କାନ୍ଧରେ ମୃତ କାକଳୀ ଓ ଆଲୁଅରେ ଶାଣିତ ଅନ୍ୟ କାନ୍ଧଠାରୁ ଆଙ୍ଗୁଳି ପର୍ଯ୍ୟନ୍ତ ବ୍ୟାପି

ଯାଇଥିବା ହାତରେ ଚକ୍ ଚକ୍ ଛୁରି ଧରି ହୁଙ୍କାର କରୁଛନ୍ତି, କେବଳ ଗୋଟିଏ ଗୁଣ୍ଡାର ଉତ୍ତର ଦେଇ ନାହିଁ; ଉତ୍ତର ଦେଇଛନ୍ତି ପାପ ପୁଣ୍ୟର ଉତ୍ତରଳ ଜଳ ସ୍ରୋତରେ ଭାସି ଆସୁଥିବା ମୁହ୍ୟମାନ ମଣିଷକୁ : "ସେ ସାମ୍ନା କରିବ, ଓ ସାମ୍ନା କରୁ କରୁ ବଞ୍ଚିବ ଓ ମରିବ"। ସେ ଦୁର୍ଯୋଧନ ଓ ଆଲେକ୍ଜାଣ୍ଡରର ବଂଶଧର। ପାଟ୍ରିସ୍ ଲୁମ୍ବା, ଚେ ଗୁଏଭାରା ଓ ହୋ-ଚି-ମିନ୍ଙ୍କର ରକ୍ତାକ୍ତ ଉତ୍ତର-ପୁରୁଷ।

ଆପଣଙ୍କୁ ମୋର ପ୍ରଣାମ ରହିଲା।

ରତ୍ନାକର ପଣ୍ଡା

ରାଉରକେଲା



## ଗୁଣ୍ଡା

ଲିଙ୍ଗରାଜ ଆଇନ୍ ମହାବିଦ୍ୟାଳୟ ନାଟକୋତ୍ସବ ୧୯୭୬

ନିର୍ଦ୍ଦେଶନା : ଶ୍ରୀ ବାଳକୃଷ୍ଣ ଦାଶ
ବାବୁଲୁ : ଶ୍ରୀ ଅମରେନ୍ଦ୍ର ମହାପାତ୍ର
ସତୀଶ : ଶ୍ରୀ ବାଲକୃଷ୍ଣ ଦାଶ
ଯାପେନ୍ : ଶ୍ରୀ ଗୋପାଳକୃଷ୍ଣ ପଟ୍ଟନାୟକ
ଲକ୍ଷ୍ମଣ : ଶ୍ରୀ ପୁରୁଷୋତ୍ତମ ଦାସ
ତାରାପଦ : ଶ୍ରୀ ସୁରେଶଚନ୍ଦ୍ର ସାହୁ
ଧନମଣି : ଶ୍ରୀ ଶ୍ରୀନିବାସ ମିଶ୍ର
ବାପା : ଶ୍ରୀ ପ୍ରଫୁଲ୍ଲ ଜଗନ୍ନାଥ ପାଢ଼ୀ
କାକଳୀ : କୁମାରୀ ମାମିନୀ ଶତପଥୀ
ମଞ୍ଚସଜ୍ଜା, ଆଲୋକ ଓ ଶବ୍ଦ : ଶ୍ରୀ କେଦାର ଆଢ୍ୟା
ସଙ୍ଗୀତ : ଶ୍ରୀ ବାଲକୃଷ୍ଣ ଦାଶ, ନିର୍ଦ୍ଦେଶକ (ଗୁଣ୍ଡା)

## ଗୁଣ୍ଡା

ନିଖିଳ ଉତ୍କଳ ଲୋକନାଟକ ମହୋତ୍ସବ

ରାଉରକେଲା ୧୭।୧୨।୭୭ ବ୍ରହ୍ମପୁର ୨୧/୨୨-୧୨-୭୭

ପରିବେଷଣ : ଗଞ୍ଜାମ କଳା ପରିଷଦ, ବ୍ରହ୍ମପୁର
ନିର୍ଦ୍ଦେଶନା : ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର (ଶ୍ରେଷ୍ଠ ନିର୍ଦ୍ଦେଶକ ବିବେଚିତ)
ବାବୁଲୁ : ଶ୍ରୀ ନରେନ୍ଦ୍ର ମିଶ୍ର (ଚଳଚ୍ଚିତ୍ର)
ଯାଦେନ୍ : ଶ୍ରୀ ଶତ୍ରୁଘ୍ନ ପାତ୍ର (ଚଳଚ୍ଚିତ୍ର)
ଲକ୍ଷଣ : ଶ୍ରୀ କୁମୁଦ ଚନ୍ଦ୍ର ରଥ
ସତୀଶ : ଶ୍ରୀ ବାଲକୃଷ୍ଣ ଦାଶ (ଦ୍ୱିତୀୟ ଶ୍ରେଷ୍ଠ ଅଭିନେତା)
ତାରାପଦ : ଶ୍ରୀ ଶ୍ୟାମସୁନ୍ଦର ଶତପଥୀ
ଧନମଣି : ଶ୍ରୀ ଅମ୍ବିକା ପ୍ରସାଦ ମିଶ୍ର
ବାପା : ଶ୍ରୀ ଦେବେନ୍ଦ୍ର ଚୌଧୁରୀ
କାକଳୀ : ଶ୍ରୀମତୀ କୁମୁଦିନୀ ମହାରଣା
ମଞ୍ଚସଜ୍ଜା : ଶ୍ରୀ ବିପିନ୍ବିହାରୀ ସାହୁ, ଶ୍ରୀ କେଦାର ଆଢ୍ୟା,
ଅଧ୍ୟାପକ ନୃସିଂହ ମହାପାତ୍ର
ସଙ୍ଗୀତ ପରିଚାଳନା : ଶ୍ରୀ ଅଶୋକକୁମାର ପାଢ଼ୀ
ଯନ୍ତ୍ରୀ : ଶ୍ରୀ ଜୟ ମହାରଣା, ଶ୍ରୀ ପ୍ରଭାତକୁମାର ଶତପଥୀ
ମଞ୍ଚ ପରିଚାଳନା : ଶ୍ରୀ ପ୍ରଦୀପକୁମାର ପାଢ଼ୀ, ଶ୍ରୀ ଅମ୍ବିକାପ୍ରସାଦ ମିଶ୍ର



# ପ୍ରଥମ ଅଙ୍କ

[ କୌଣସି ଏକ ସହରର ବସ୍ତି ଅଞ୍ଚଳ । ଦୂରରୁ ଗୋଟିଏ ଫ୍ୟାକ୍ଟ୍ରିର ଚିମ୍ନି ଓ କିଛି ସହରତଳି ଘରର ଚାଳ ଛୋଟ ଛୋଟ ହୋଇ ଦିଶୁଛି । କିଛି ପରିତ୍ୟକ୍ତ ଗାତ, କିଛି ଅରମା ଓ ଗୋଟାଏ ଅଧ ଲମ୍ବା ଗଛ । ସରୁ ହୋଇ ଅସନା ରାସ୍ତାଟା ଯେଉଁଠି ବଙ୍କେଇ ଯାଇଛି, ସେଇଠି ଗୋଟିଏ କମ୍ ଉଚ୍ଚର ପୁରୁଣା ଚାଳଘର । ଘର ବାହାର ଚାପାରେ ଗୋଟାଏ ଡଷ୍ଟବିନ୍ । ଭିତର ବାହାର ହୋଇ ଦୁଇଟି କୋଠରୀ ଦେଖାଯିବ । ଭିତର କୋଠରିଟିର କିଛି ଅଂଶ । ସେଇଠି ଗୋଟାଏ ଲଣ୍ଠନ ଜଳିପାରେ ।

ଘର ଭିତରେ କୌଣସି ଆସବାବପତ୍ର ନାହିଁ । ବାହାର ଘରେ ଗୋଟିଏ ଦଉଡ଼ିଆ ଖଟ । କାନ୍ଥରେ ଗୋଟିଏ ପୁରୁଣା ବଡ଼ କମ୍ପାନୀର କ୍ୟାଲେଣ୍ଡର୍ । ଭିତର ଘର କାନ୍ଥରେ ଗୋଟାଏ ଦି'ଟା ଅସ୍ପଷ୍ଟ ଦେଖାଯାଉଥିବା କିରାସିନ ବୋତଲ ଝୁଲୁଛି । ଅଳନ୍ଧୁ ଲଗା ଶିକା ଦୁଇଟି ମଧ୍ୟ ।

କୁଡ଼ିଆର ଚାଳ ଉପରେ ଦି'ଟା ପୁରୁଣା ରିକ୍ସା ଟାୟାର୍ ଓ ବାଉଁଶର ଟୁକୁଡ଼ା, ପେଟି ଇତ୍ୟାଦି । ରାସ୍ତା ସେପଟେ ଗୋଟିଏ ଭଙ୍ଗା ରିକ୍ସା ସେମିତି ପରିତ୍ୟକ୍ତ ହୋଇ ପଡ଼ିଛି ।

ମଞ୍ଚରେ ଆଲୁଅ ଜଳିଲାବେଳକୁ ଏକ ଝଡ଼ ବର୍ଷାର ସନ୍ଧ୍ୟା । ସତୀଶ୍ ଟେଇଲର୍ ବସିଛି ଦଉଡ଼ିଆ ଖଟ ଉପରେ । ପାଖରେ ମଦ । ଭିତର ଘରେ ବାବୁଲୁ । କ'ଣ ଗୋଟାଏ ଖୋଜୁଛି । ]

ସନ୍ତୋଷ୍ ॥ ଗୁରୁ ! ଜଲ୍‌ଦି କର ।

ବାବ୍‌ଲୁ ॥ (ଭିତରେ) ଚୁପ୍ ବେ ! ଶଳା ଅନ୍ଧାରଟାରେ କିଛି ଦିଶୁନି ।

ସନ୍ତୋଷ୍ ॥ (ଦିଆସିଲିଟା ଫୋପାଡ଼ି) ଦେଖ୍, ଦିଆସିଲି ମାରି ଦେଖ୍ ।

ବାବ୍‌ଲୁ ॥ (ଭିତରୁ ଗୋଟାଏ ଟିଣ ଗିଲାସ ବାହାର କରି) ନେ' । ଏଇଥିରେ ପି' । ଶାଳା ମ ତାଲ କୋଉଠିକାର !

ସନ୍ତୋଷ୍ ॥ ତୁ' କେଉଥିରେ ପିଇବୁ ?

ବାବ୍‌ଲୁ ॥ ମୋର ବୋତଲ୍‌ରେ ଚଳିବ ।

ସନ୍ତୋଷ୍ ॥ ନାହିଁ ନାହିଁ, ମୁଁ ବୋତଲ୍‌ରେ ପିଉଚି । ତୁ ଗିଲାସରେ ନେ' ।

(ମଦ ଢାଳିଚି)

ବାବ୍‌ଲୁ ॥ ଘୋଡ଼ା ମଦୁଆ, ଶାଳା କୋଉଠିକାର ! ସବୁଗୁଡ଼ାକ ଏଇନେ ପିଇବୁ ?

ସନ୍ତୋଷ୍ ॥ ଆରେ ୟାର୍ ! କୁଛ୍ ନହିଁ ହୋଗା । ମା' କସମ୍ ।

ବାବଲୁ ॥ (ଖେଙ୍ଗେଇ ହୋଇ) ଏଁ ! କୁଛ୍ ନେହିଁ ହୋଗା ! ଦି' ଢୋକ ପିଇ କାଲି ଯୋଡ଼େ ଗ୍ଲାସ୍ ଭାଙ୍ଗି ଦେଇଛୁ ! ଦେଖ ସନ୍ତୋଷ ଟେଇଲର୍ ! ଆଜି ଯଦି ମଦ ପିଇ ଏଇଠି ବେଶୀ ତିଆଁତେଇଁ କରିବୁ ଶଳାର ଦାନ୍ତ ଝଡ଼େଇଦେବି ।

ସନ୍ତୋଷ୍ ॥ ହେୟ୍ଟ୍ ଗୁରୁ, ଅପମାନ କରନା କହୁଚି । ଶଳା, ମଦ ପିଇବା ତତେ ଶିଖେଇଲା କିଏ ବେ' ?

ବାବ୍‌ଲୁ ॥ (ଖୁବ୍ ଜୋର୍‌ରେ ଗୁଡ଼ାଏ ଉଠେଇ) କ'ଣ କହିଲୁ ? ମଦ କିଏ ଦଉଚୁ ବୋଲି ଦେଖେଇ ହଉଚୁ ! (ଗିଲାସରୁ ପିଇବାକୁ ଲାଗିଲା) .

ସନ୍ତୋଷ୍ ॥ ରାଗେ ନା ମ' ଗୁରୁ ! ତତେ କ'ଣ ମୁଁ ସେଇକଥା କହିଲି ? ଆମ ବସ୍ତିରେ ତୁ' ଯେତେବେଳେ ଅଛୁ ତତେ ପିଲେଇବା ଦାୟିତ୍ୱ ମୋର । ଆରେ ୟାର୍ ସନ୍ତୋଷ୍ ଟେଇଲର୍ କେତେଟା ଗ୍ରେଟ୍ ବୋଲି କ'ଣ ତା'ର ଦିଲ୍‌ଟା ଗ୍ରେଟ୍ ବୋଲି ଭାବୁଚ ? ମା' କସମ୍, ହମ୍ କମୀନେ ନହିଁ ହୈ···

ବାବ୍‌ଲୁ ॥ ଶଳା ଇଲେକ୍‌ସନ ପଇସା ମାରଦେଇଚି ।

ସନ୍ତୋଷ୍ ॥ (ପିଇ ପିଇ) ମତେ କ'ଣ ସାଟପେନ୍ ଦାସ ପାଇଲୁ କି ? ଯୋଉଠି ମିଳିଲା ଆଖି ମୁଦି ଲୁଟ୍ କରିଦେଇଥିବୁ··· ! ହେଁଃ ! ଖୋଦ୍ ହାତ୍‌କା କମାଇ···ହକ୍ ଶାଲା ମେହେନତ କରିବୁ ଆଉ ଜେଲ୍ ମୁର୍ଗୀ-ମାଛ ଖାଇବୁ । କୌନ୍ ଶାଲାକୋ ହମ୍ କେୟାର ନହିଁ କର୍‌ତା···

ବାବ୍‌ଲୁ ॥ ଧୀପେନ୍ ଶାଳା ହାରାମ୍‌ଜାଦା ।

ସନ୍ତୋଷ୍ ॥ ଭାଗ୍ୟପଦ ବାବୁର ଗୃହଗ୍ରୂ । ମଣ୍ଟୁ ସଙ୍ଗରେ ଓ୍ୱାଗନ୍ ଭାଙ୍ଗୁଚ ।

ବାବ୍‌ଲୁ ॥ ଶ.ଲା ଗ୍ରେଟ୍, ମୋ ଆଗରେ ବାହୁ ଦେଖଉଚ !

ସନ୍ତୋଷ୍ ॥ ଆରେ ଗୁରୁ, ଆମେ କ'ଣ ମାଡ଼ପିଟ୍ କରୁନୁ ? ମ' କସମ, ଅନ୍ୟାୟରେ ଆମେ କୋଉଠି ହାତ ଚଲେଇବୁନ । ଉପରକୁ ଆସିଲେ ଗୁଡ଼ୁବୁନ ।

ବାବ୍‌ଲୁ ॥ ଶଳା ଧୀପେନ୍, ମନକୁ ମନ ସିନିଅର୍ ହେଇଯାଉଚ ।

ସନ୍ତୋଷ୍ ॥ କ'ଣ ଉତେ କହୁଲା କ ଗୁରୁ ?

ବାବ୍‌ଲୁ ॥ ମତେ ? ଧୀପେନ୍ ଦାସ କହିବ ? (ତାଚ୍ଛଲ୍ୟରେ) ହୁଁଃ !

ସନ୍ତୋଷ୍ ॥ ଉତେ କ'ଣ କହିଲେ ଜଣେଇବୁ, ଗୁରୁ ! ଏଇଥର ଶଳା ଭୁକାଲରେ ଭୁଜ ଦ'ଟା ଝାଙ୍ଗିଦେବା । ମା କସମ୍...!!

ବାବ୍‌ଲୁ ॥ ଶାଳା କ'ଣ କଣ ପାଗଳା ମତେ ? ମୁଁ ଯାଇ ସେ ବୁଢ଼ିଆ ଭାଗ୍ୟପଦ ମାହାନ୍ତି ପାଇଁ ଇଲେକ୍‌ସନ୍ ପ୍ରଚାର କରିବ ? ନ ହେଇ ନ ହେଇ ସେଇ ଭାଗ୍ୟପଦ ?

ସନ୍ତୋଷ ॥ ଠୋକାଧନ୍ଦା କରୁଚ । ମଣ୍ଟୁ, ଧୀପେନ୍ ମିଶି ସେଦିନ ଦ' ଲକ୍ଷ ଟଙ୍କାର ଚାଳ ଓ୍ୱାଗନ୍‌ଟା ଲୁଟ୍ କରିଦେଲେ ।

ବାବ୍‌ଲୁ ॥ ମତେ କହୁଚ ହେମନ୍ତ ମହାପାତ୍ର ପାର୍ଟିର ଜ୍ଞପ୍‌ଟାକୁ ଘାଟି ସ୍ତ୍ରା ର ଉଡ଼େଇଦିଅ । ମୁଁ କାହିଁକି ହେମନ୍ତ ମହାପାତ୍ରର ଜ୍ଞପ୍ ଉଡ଼େଇବ.କୁ ଯିବି କରେ ସନ୍ତୋଷ୍ ? ଆମ ପାଇଁ ହାତୀଚଢ଼ିବାଲା ଯେତିକି ହାରାମ୍‌ଜାଦା, ସାଇକଲ୍ ଚଢ଼ିବାଲା ବ ସେତିକି ।

ସନ୍ତୋଷ ॥ ( ନିଶାରେ ଟଳମଳ ହେଇ ଉଠିପଡ଼ିଲା ) 'ନରୋତ୍ତମ ଦ.ସ କହେ, କୌନ ଶ ଲ ଭଲେ ନୁହେଁ'...ଗୁରୁ... ! ଶାଳା କଟି ମାନେକର୍ ଆଜ୍ଞା ବାକେ ମାଲ୍ ଦେଇ ଦେଇଚ, ଶାଲାର ଦମାକ୍ ଝାଣ ହେଇ-ଗଲଣି । ମାଡ଼ ଦରକାର୍ । କ୍ରୁଂଦନ୍ ହବା ଉଚିତ । ମା' କସମ୍... !

ବାବ୍‌ଲୁ ॥ ମାଲ୍‌ଟା ଖରାପ ଲାଗୁନ ତ ! ନିଶାଟା ଜମି ଜମି ଆସିଲାଣି ।

ସନ୍ତୋଷ୍ ॥ ବର୍ଷା ପାଗଟା ବଡ଼ ଜମାଣିଆ ହୋଇଚ । ଆଉ କିଛି ମାଲ୍ ମଗେଇବା ?

ବାବ୍‌ଲୁ ॥ ଗରମ ପକୋଡ଼ି ହେଇଥିଲେ ବଢ଼ିଆ ହେଇଥାନ୍ତା ।

ସନ୍ତୋଷ ॥ ଚନାଚୁର୍, ପିଆଜ କଟା...

ବାବ୍‌ଲୁ ॥ ମଟନ୍ ରୋଲ୍...

ସନ୍ତୋଷ୍ ॥ ପିଇଲା ପରେ ମୁର୍ଗୀକା ଅଣ୍ଡା କିଛି ଦରକାର ।

ଃ ତିନି ଃ

ବାବ୍ଲୁ ॥ ଘର ଶାଳା ଅଣ୍ଡା ଖାଇଲ ବାବୁ ! ମୁର୍ଗୀ ମାଂସଟା ବେଷ୍ଟ ହୁଅନ୍ତା ।

ସତୀଶ ॥ ମୁର୍ଗୀ କା ଅଣ୍ଡେ । ତୁ ଜାଣିନୁ···

ବାବଲ୍ ॥ ମୁର୍ଗୀ ମାଂସ, ମଜା ଆ ଯାଏଗା ।

ସତୀଶ ॥ ମୁର୍ଗୀ ଅଣ୍ଡା ।

ବାବଲ୍ ॥ ଷ୍ଟପ୍ ! ମୁର୍ଗୀ ମାଂସ ।

ସତୀଶ ॥ ମୁର୍ଗୀ କା ଅଣ୍ଡା, ମା'ଙ୍କ କସମ !

ବାବଲ୍ ॥ ଷ୍ଟପ୍, ବେଶୀ ପଟି କରିବୁ ତ ଦେବି ଥାପେଡ଼ । ( ହାତ ଉଠେଇଛି ଓ ପିଟିଛି )

ସତୀଶ ॥ ହଉ ହେଲା ପଛ ମୁର୍ଗୀ କା ମାଂସ । ତୁ' ରାଗେନା ।

ବାବ୍ଲୁ ॥ ଅଲବତ୍ ରାଗିବି । ସ୍ୱେଜ ଶଳା ପିଇଦେଇ ଏଇଠି ମୁର୍ଗୀ ଅଣ୍ଡା ଖାଇବ । ଆଣ୍, ମୁର୍ଗୀ କା ମାଂସ ଆଣ୍ ।

ସତୀଶ ॥ କୋଉଠୁ ଆଣିବି ? ( ଗାଲକୁ ଅଣ୍ଡାଳି ) ଖୁବ୍ ଜୋର୍ ହେଇଗଲା, ଗୁରୁ !

ବାବ୍ଲୁ ॥ ଆଣ୍ ମୁର୍ଗୀ କା ମାଂସ, ଆଜି ମୁଁ ଚିକେନ୍ ଖାଇବି । ଅଲବତ୍ ।

ସତୀଶ ॥ ଦେଖ ଭାଇ, ଚିକେନ୍ ଖୋଇବା ପାଇଁ ମୋ ପାଖରେ ପଇସା ନାହିଁ ।

ବାବ୍ଲୁ ॥ ଘରେ ଶାଳା କୁକୁଡ଼ା ପୋଷିଛୁ – ଚିକେନ୍ ଖୋଇବୁନି ?

ସତୀଶ ॥ ମୋ' ଘରେ କ'ଣ ତୁ' ଖାଇବୁ ଗୁରୁ ? ତୁ' ପରା ବଡ଼ଲୋକର ଛୁଆ ?

ବାବଲ୍ ॥ ଗୋଲି ମାର୍ ଶାଳା ସେ ବଡ଼ଲୋକକୁ··· ! ମୋ' ବାପା ଥିଲେ ବଡ଼ଲୋକ, ମୁଁ ନୁହେଁ । ମୁଁ ତ ସତ୍ୟନଗର ବସ୍ତିରେ ରହୁଥିବା ବାବ୍ଲୁ ଗୁଣ୍ଡା । ବସ୍ତି ଅଞ୍ଚଳର ମସ୍ତାନ୍ । ବାପା କିଣିଥିଲେ ଏ ଘରଟା; କୋଉ ଗୋଟିଏ କୁଳି ମଜଦୁର୍ ର ଝୁପୁଡ଼ି ଚାପି, କିଏ ଜାଣେ ? ନ ହେଲେ ଅବସରପ୍ରାପ୍ତ ପୋଲିସ୍ ଡି. ଆଇ. ଜି. ଜମ୍ନେଶ୍ୱର ମହାପାତ୍ରଙ୍କର ଏଇ କୁଖ୍ୟାତ ବସ୍ତିରେ ଗୋଟିଏ ଘର କିଣିବା ଦରକାର କ'ଣ ଥିଲା ? ତାଙ୍କର ବ୍ଲାକ୍ ମାର୍କେଟ୍ କରୁଥିବା ବ୍ୟବସାୟୀ ପୁଅ Link Roadର Air conditioned କୋଠା ଛାଡ଼ି ଏଇଠି ରହିବା ପାଇଁ କେବେ ପସନ୍ଦ କରିବେନି । ମଝିଆଁ ପୁଅ ଅଫିସର୍··· ଗଳିବସ୍ତିରେ ରହିବେନି । ତଥାପି ଶାଳା ବାପାର ମୋ' ପ୍ରତି ଏତେ ଘୃଣା ଯେ ମୁଁ ଅଛି ବୋଲି ଘରଟାକୁ repair କରୁନି ।

ସତ୍ତୀଶ୍ ।। ଠିକ୍ ଅଛୁ । ତୁ' କଛୁ ଚନ୍ତା କରନା, ଗୁରୁ ! ମାଇପକୁ କହୁଚ ··
ଗୋଟେ ମୁର୍ଗୀ କଟା ହଉ ଆଜ । ନ ହେଲେ ଦ'ଟା କଟା ହଉ···
ମା'ଙ୍କ କସମ୍···ସତ୍ତୀଶ୍ ଟେଇଲର୍‌ର ଦଲ୍ ଗ୍ରେଟା ନହିଁ ହେ···
( ଯାଉଥିଲ, ପୁଣି ପଛରୁ ଫେରି ) କନ୍ତୁ ଗୁରୁ, ତୁ ବ୍ରାହ୍ମଣ ଛୁଆ···
ଆମ ପାଣ ଘରେ ଖାଇବାକୁ ମନା କରି ଦେବୁନ ତ ?

ବାବ୍‌ଲୁ ।। ବ୍ରାହ୍ମଣ ଛୁଆ ! ହୁଁଃ ! ପଇତା ଛୁଣ୍ଡେଇ ଦେଇଚ । ଫୈନ୍ କେସ୍କାର୍
କର୍‌ତା ହେ ? ବେକରେ ଏଇ ବାଘନଖର ପଦକଟା ଝୁଲୁଚ,
ଦେଖୁଚୁ ସଢଆ ? ଏଇଟା ମୋର ଜାଢ । ମୁଁ ହଂସ୍ର ··ମୋ' ବାହୁର
ତାକତ୍ ଉପରେ ମୋ' ପଢଆଗ୍—ମୁଁ ନଜେ ପୋଲସ···ଅନ୍ୟାୟ
ଦେଖିଲେ ଲଠିମାଡ଼ କରିପ ରେ । ମୁଁ ନଜେ ଜଷ୍ଟିସ୍···ଅନ୍ୟାୟ
ଦେଖିଲେ ଦାନ୍ତ ଝଡ଼େଇ ନ୍ୟାୟ ଆଣିପାରେ । ସତ୍ତୀଶ୍ ! ଜାନ୍ଦେଗୀରେ
ମୁଁ କେବେ ଅନ୍ୟାୟ କରିନ । ଜାନ୍ଦେଗୀରେ ମୁଁ କେବେ ଟୋକା
ଧନ୍ଦା କରିନ···

ସତ୍ତୀଶ୍ ।। ମା'ଙ୍କ କସମ୍··· !!

ବାବ୍‌ଲୁ ।। ହଁ, ଗୁରୁ ! ମୁଁ ସେଇ ଦୃଷ୍ଟିରୁ ବ୍ରାହ୍ମଣ । ଗୀତା ଭାଗବତ ନ ପଢ଼ି ମଧ୍ୟ
ବ୍ରାହ୍ମଣ । ତୋ' ଘରେ ଖାଇଲେ ଜାଢ ଯିବ କାହିଁକ ?

ସତ୍ତୀଶ୍ ।। ଯାଉଚ···ମାଇପ ଆଜ ଆଉ ଗାଲ ଦବନ । ତୁ ଆମ ଘରେ ଖାଇବୁ
ବୋଲି ଶୁଣିଲେ ଆଉ ଗାଲ ଶୁଣିବାର ଚ୍ୱାନସ୍ ନାହିଁ । ନ ହେଲେ
ମଦ ପିଇଲେ ଯୋଉ ଗାଲ ଦଉଚରେ ଘରେ···ମା'ଙ୍କ କସମ୍··· !!

ବାବ୍‌ଲୁ ।। ଯା···ଯା···ଜଲଦ ବ୍ୟବସ୍ଥା କର୍···ଭୋକ ହେଲଣି ।

ସତ୍ତୀଶ୍ ।। ଗୁରୁ, ଆଜ ମୁର୍ଗୀ ଅଣ୍ଡା ଦରକାର ଥିଲ ।

ବାବ୍‌ଲୁ ।। ମୁଁ ଯାଇ ଅଣ୍ଡା ଆଣିବ ଏବେ ? କ ମୁସ୍କିଲ୍ ଶଲା···

ସତ୍ତୀଶ୍ ।। ଗୁରୁ, ଆଉ ମଦ କେବେ ପିଇବା ନାହିଁ ।

ବାବ୍‌ଲୁ ।। ନାଃ ।

ସତ୍ତୀଶ ।। କେବେ ନୁହେଁ । ମା'ଙ୍କ କସମ···

ବାବ୍‌ଲୁ ।। ହୁଁ, ( କଛୁ ସମୟ ପରେ ) ସତ୍ତୀଶ୍ !

ସତ୍ତୀଶ୍ ।। ଗୁରୁ !

ବାବ୍‌ଲୁ ।। ଶଳା ଧୀପେନଟା ବଦମାସ ଅଛୁ । ଟୋକାଧନ୍ଦା ଖୁବ୍ ଚଲେଇଚ ।

ସତ୍ତୀଶ୍ ।। ତୁ' ତାକୁ ଏ ଘରେ ପୁରାନା ।

ବାବ୍‌ଲୁ ।। ଏକା ଗୃପ୍‌ର ପିଲ । ଏକା ଜମ୍‌ନାସିୟମ୍‌ର । ତେଣୁ ମୁହଁ ଖୋଲ
ମନାକର ହଉନ ।

ସତୀଶ୍ ।। ଶଳାଟା ଖୁନୀ । ସତ୍ କରି କ୍ଲବ୍ ଚଳେଇଦଉଚି ।

ବାବ୍ଲୁ ।। ପୁଣି କୋଉଠି କ୍ଲବ୍ ଚଳେଇଚି ?

ସତୀଶ୍ ।। ନା, ଏଇ ଯୋଉ ଆଠ ଦିନ ତଳେ ସସ୍‌ପେନ୍ସ କ୍ଲବର ଟୋକାଟା ମର୍ଡ଼ର ହେଲା···

ବାବ୍ଲୁ ।। ସେଇଟା କ'ଣ ଦୀପେନ୍ ଦାସ ?

ସତୀଶ୍ ।। ହୁଁ । ପୋଲିସ୍ ଖୋଜୁଚି । ଶଳା ଲୁଚିଲୁଚି ବୁଲୁଚି ।

ବାବ୍ଲୁ ।। ଇଲେକ୍‌ସନ୍ କାମରେ କୁଆଡ଼େ ଗଳିଯାଇଚି ବୋଧହୁଏ, ମୁଁ ଜାଣିନି । ସେ ଯା' ହଉ ସତୀଶ, ତୁ ପିବୁ ନା ଏମିତି ବକ୍‌ବକ୍ ହେଉଥିବୁ ?

ସତୀଶ୍ ।। ଆଉ ମଦ ପିଇବି ନାହିଁ । ( ନିଶାରେ ଟଳମଳ ହେଉଥିଲା ) ମା'-କସମ···

ବାବ୍ଲୁ ।। ଭାଗ୍ ଶଳା ଏଇଠୁ···

ସତୀଶ୍ ।। ଯାଉଚି, ଗୁରୁ !

ବାବ୍ଲୁ ।। ଜଲ୍‌ଦି ଫୁଟୋ ଏଇଠୁ······

ସତୀଶ୍ ।। ବାହାରେ ବିଜୁଳି ମାରୁଚି । ବର୍ଷା ହେଇପାରେ ।

ବାବ୍ଲୁ ।। ତୋ'ର ସେଇଠୁ କ'ଣ ଗଲା ?

ସତୀଶ୍ ।। ଆଉ ମଦ ପିଇବି ନାହିଁ ।

ବାବ୍ଲୁ ।। ଭାଗ୍ ଶଳା ଏଇଠୁ··· !!

( ଧକ୍‌କା ଦେଇ ବାହାର କରି ଦେଲା )

ସତୀଶ୍ ।। ( ବାହାରୁ ) ମୁଁ ପୁଣି ଡାକି ଆସିବି, ଗୁରୁ ! କୁଆଡ଼େ ଗଳିଯିବୁନି ।

ବାବ୍ଲୁ ।। କୁଆଡ଼େ ଯିବିନି ମାନେ ? ମୁର୍ଗୀ କା ମାଂସ ଖାଇବି ବୋଲି ଏଇଠି ରାତିସାରା ଅପେକ୍ଷା କରିବି ନା କ'ଣ ?

ସତୀଶ୍ ।। ( ବାହାରୁ ) ମୁଁ ଏଇ ଘଣ୍ଟାଏ ଭିତରେ ଆସୁଚି······

[ ସତୀଶ୍ ଗଳିଗଲା ପରେ କବାଟ ବନ୍ଦ କରି ବାବ୍ଲୁ ଗଳିଆସିଲା । ଜୋତାଟା ଖୋଲିଲା । ବାହାରେ ଖୁବ୍ ଜୋର୍‌ରେ ବର୍ଷା ଓ ବିଜୁଳି । ପ୍ରାୟ ଗୋଟାଏ ଝଡ଼ ଭଳି ଜଣାଗଲା ··

[···ବାବ୍‌ଲୁ ନିଶାରେ ଟଳମଳ ହୋଇ ଫେରୁ ଫେରୁ ଦଉଡ଼ିଆ ଖଟଟାକୁ ଟୁଣ୍ଡି ଦେଇ ଖଟଟା ଉପରେ ନିଜର ସମସ୍ତ ରାଗ ଅଜାଡ଼ି ଦେଇଛି । ]

ବାବ୍‌ଲୁ ।। ସ୍ୱାଗ ଶାଳା, ଘୋଡ଼ା ମହୁଆ କୋଉଠିକାର । ମୁଁ ମଦ ପିଏନା··· ମଣ୍ଟୁ ମତେ ମଦ ପିଇବା ଶିଖେଇଛି, ମଣ୍ଟୁ···!! (ସତେ ଯେମିତି ମଣ୍ଟୁ ତା' ଆଗରେ ଠିଆ ହୋଇଛି) ତୁ ମୋର କଲିଜାଟାକୁ ପୋଡ଼ି ଦେଇଛୁ । ମୁଁ ବି. ଏ. ଫେଲ୍ ହେବା ପରେ ବାବା ଯୋଉଦିନ ମତେ ବାଡ଼େଇ ବାଡ଼େଇ ଘରୁ ବାହାର କରି ଦେଇଥିଲେ, କେବଳ ତୋ'ରି ପାଇଁ···ତୋ ସାଙ୍ଗରେ ମୋର ବନ୍ଧୁତା ଥିଲା ବୋଲି, ମତେ ଟାଣି ଟାଣି ତୁ' ନେଇଗଲୁ ଫଜୁଲ୍ ଅହମଦ୍‌ର ଝୋଁପଡ଼ି ଭିତରକୁ···ଅନ୍ଧାର···ପାହ୍ୱାଡ଼ିଆ ରାସ୍ତା । ଓ୍ୟାଗନ୍ ଭାଙ୍ଗି ଚୋରି ଜିନିଷ ସେଇଠି ରଖେ ଫଜୁଲ୍···ଆଉ ତମେମାନେ ସେଦିନ ପ୍ରଥମ କରି ମତେ ମଦ ଚଖେଇଲ । ମୋ ଆଖିରୁ ଆଲୁଅ ଲିଭିଗଲା ଏବଂ ଅନ୍ଧାର···ପାହ୍ୱାଡ଼ିଆ ରାସ୍ତା ଆଉ ଝୋଁପଡ଼ି ଘର ସବୁଦିନ ପାଇଁ ମୋର ସାଥୀ ହୋଇଗଲେ···ଯାଃ ଶଳା···!!

[ ବାବ୍‌ଲୁ ଏକ ହତାଶାମିଶ୍ରିତ ଆତ୍ମଗ୍ଲାନି ଭିତରେ ଖଟ ଉପରେ ବସିପଡ଼ିଲା ଏବଂ ସେଇ ସମୟରେ ରାସ୍ତାରେ ଗ୍ଲଇ ଆଲୁଅ ଭିତରେ ଦିଶିଲା ଝିଅଟିଏ ଦୌଡ଼ି ଦୌଡ଼ି ଆସୁଛି । ବର୍ଷାରେ ଭିଜିଯାଇଛି, ହଠାତ୍ ଆଗରେ ଏ ଘରଟା ଦେଖି ଭିତରେ ପଶିଯାଇଛି ଓ ବାବ୍‌ଲୁକୁ ଏଇ ଅବସ୍ଥାରେ ଦେଖି ଚମକି ପଡ଼ି ଚିତ୍କାର କରିଛି । ଝିଅଟିର ନାଁ କାକଲୀ, ବୟସ ୨୨।୨୩ ବର୍ଷ ଭିତରେ । ବର୍ତ୍ତମାନ ପାଇଁ ସାମାନ୍ୟ ଅସହାୟ ମନେ ହୁଏ । ମୁହଁରେ ଅଜସ୍ର ଭୟ ଓ ଧଇଁ ସଇଁ ଭାବ । ]

କାକଲୀ ।। ଆଃ !!

ବାବ୍‌ଲୁ ।। (ଚମକି) କିଏ···?

କାକଲୀ ।। ଆପଣଙ୍କ ଗୋଡ଼ତଳେ ପଡ଼ୁଛି···ମତେ ବଞ୍ଚାନ୍ତୁ···

ବାବ୍‌ଲୁ ।। କ'ଣ ହେଇଚ ?

କାକଲୀ ।। (ଦୌଡ଼ିଯାଇ କବାଟଟା ବନ୍ଦ କରଦେଇଚ) ପ୍ଲିଜ୍, ମତେ ବଞ୍ଚାନ୍ତୁ··· ନ ହେଲେ ଲୋକଟା ମତେ ଛୁରୀ ଭୁଷିଦେବ ।

ବାବ୍‌ଲୁ ।। କଏ ? କୋଉ ଶଳା ସିଏ ଏଠି ଛୁରୀ ଭୁଷିଲବାଲା ? ( ଦୌଡ଼ିଗଲା ଦୁଆରଟା ଖୋଲିବା ପାଇଁ )

କାକଲୀ ।। ନା, ଦୁଆରଟା ଖୋଲନ୍ତୁ ନାହିଁ ।

ବାବ୍‌ଲୁ ।। କାହିଁକି ?

କାକଲୀ ।। ଧୀପେନ୍ ମତେ ପ୍ରାଣରେ ମାରି ପକେଇବ ।

ବାବଲୁ ।। ଧୀପେନ୍ ? କୋଉ ଧୀପେନ୍ ?

କାକଲୀ ।। ଆପଣ ତାକୁ ଚହ୍ନିବେ ନାହିଁ । ଗୋଟାଏ ଖୁନୀ, ଗୋଟେ ଶଇତାନ୍ ।

ବାବ୍‌ଲୁ ।। ଧୀପେନ୍ ଦାସ୍ ?

କାକଲୀ ।। ହଁ, ଧୀପେନ୍ ଦାସ୍ । ଜାଣିଛନ୍ତି ?

ବାବ୍‌ଲୁ ।। ହଁ, ଧୀପେନ୍ ମୋର ବନ୍ଧୁ ।

କାକଲୀ ।। (ଭୟରେ ଚକ୍କର କରି) ଆଃ !! (ଦୌଡ଼ିଗଲା ଦରଜା ଖୋଲି ପଳେଇଯିବା ପାଇଁ)

ବାବଲୁ ।। ନା, (ଦୌଡ଼ିଯାଇ ଦୁଆରଟା ବନ୍ଦ କରିଦେଇଚ) ରୁହ ।

କାକଲୀ ।। ଛାଡ଼ିଦଅନ୍ତୁ ମତେ···

ବାବ୍‌ଲୁ ।। ରୁହ, ତମେ ଯାଇ ପାରିବନି ।

କାକଲୀ ।। ଧୀପେନ୍ ଏଠିକି ଆସି ଯାଇପାରେ ।

ବବଲୁ ।। ତମେ ଏଠିକି ଆସିବା ସିଏ ଦେଖିଚ ?

କାକଲୀ ।। ମୁଁ ଜାଣିନି । ସିନେମା ଯାଇଥିଲି । ଧୀପେନ୍‌କୁ ଦେଖି ଫେରିଆସିଲି । ଲୋକଟା ମୋର ପିଛା ଧରିଲା···ତା'ପରେ ଏଇ ବସ୍ତି ପାଖରେ ରାସ୍ତାଟା ଅନ୍ଧାର ଥିଲା···ରିକ୍‌ସାଓ୍ୱାଲାକୁ ଗୋଟାଏ ଧକ୍‌କା ଦେଇ···ଆଃ !! ତା' ହାତରେ ବଡ଼ଟ ଗୋଟାଏ ଛୁରୀ ଚକ୍ ଚକ୍ କରୁଥିଲା···

[ ହଠାତ୍ ବାହାରେ ଖୁବ୍ ଜୋରରେ ଦରଜା ଠକ୍ ଠକ୍ ହେଲା ଏବଂ ଶୁଣାଗଲା ଧୀପେନ୍‌ର କଣ୍ଠସ୍ୱର··· ]

ଧୀପେନ୍ ।। ଓସ୍ତାଦ୍···! ଓସ୍ତାଦ୍ !!

କାକଳୀ ।। (ଚିତ୍କାର କରିବାକୁ ଯାଉଥିଲା, ହଠାତ୍ ସ୍ୱର କମିଗଲା) ପାପେନ୍ !

ବାବ୍‌ଲୁ ।। ଆସ୍ତେ···ଆସ୍ତେ···

କାକଳୀ ।। ପ୍ଲିଜ୍ , ମତେ କୋଉଠି ଲୁଚେଇଦିଅନ୍ତୁ···

ବାବ୍‌ଲୁ ।। କୋଉଠି ?

ପାପେନ୍ ।। ଓସ୍ତାଦ୍···ଓସ୍ତାଦ୍···ଦରଜା ଖୋଲ ଭାଇ···!!

କାକଳୀ ।। (ଗୋଡ଼ ତଳେ ପଡ଼ିଯାଇ) ମତେ ବଞ୍ଚାଅ···!!

[ ବାବ୍‌ଲୁ କୁଆଡ଼େ କିଛି ବାଟ ନ ପାଇ ତାକୁ ନେଇ ପଛପଟର ଅନ୍ଧାର ଘରଟା ଭିତରେ ପୂରେଇ ଦେଇଛି ଓ ଆସି ଦରଜା ଖୋଲୁଛି । ]

ପାପେନ୍ ।। ଓଃ ! ବର୍ଷାରେ ଭିଜିଗଲି, କ'ଣ କରୁଥିଲୁ ?

ବାବ୍‌ଲୁ ।। ମାଲ୍ ପିଇ ଶୋଇପଡ଼ିଥିଲି । (ଖଟ ଉପରେ ବସିଛି) ଆଉ ଖବର କ'ଣ ? ଆରେ ଓସ୍ତାଦ୍ , ଏମିତି ଧଇଁ ସଇଁ ହେଉ···କ'ଣ ? କ'ଣ ହେଇଛି ଟେ ର ?

ପାପେନ୍ ।। କାକଳୀ ଘରକୁ ଯାଇଥିଲି ।

ବାବ୍‌ଲୁ ।। କାକଳୀ କିଏ ?

ପାପେନ୍ ।। କାକଳୀ ମିଶ୍ର ! ସେଇ ଶଳା ମାଷ୍ଟ୍ରାଣୀ···!!

ବାବ୍‌ଲୁ ।। ଓ···କେଜାଣି ଶଳା, ମନେ ପଡ଼ୁନି । ହଁ, ତା'ପରେ ? ତା ପରେ କ'ଣ ହେଲା ?

ପାପେନ୍ ।। ଶାଳୀ ବଜ୍ଜାତ୍ ଟୋକୀ···

ବାବଲୁ ।। ତୁ ତାକୁ ପ୍ରେମ କରୁଥିଲୁ ?

ପାପେନ୍ ।। ଶାଳୀ ଧୋକାବାଜ, ଘରେ ନ ଥିଲା । ହଠାତ୍ ଦେଖା ହେଇଗଲା ସିନେମା ହଲ୍‌ରେ । ଫଳେ କଲି, ସବୁ ଗୋଳମାଳ ହେଇଗଲା ଓସ୍ତାଦ୍ ! ପାଖରେ ଆଉ ଦଳେ ଟୋକା ଥିଲେ, ଶଳା ସେଇଥିରୁ ଗୋଟାକୁ ମାରିଛି ଗୋଟାଏ ଝାବୁଡ଼···କୁଆଡ଼େ ଦୌଡ଼ି ପଳେଇଲା··· ପତ୍ତା ମିଳିଲା ନାହିଁ···ଆଉ ଏଇ ଟୋକୀଟା ଯେ କୋଉଠି ଅନ୍ଧାର ଭିତରେ ହାଓ୍ୱା ହେଇଗଲା—କିଛି ଜାଣିପାରିଲି ନାହିଁ ।

ବାବ୍‌ଲୁ ।। ଏଇଠି ବସ୍ତି ଭିତରକୁ ଆସିଲା ?

ଦୀପେନ୍ ।। ମୋର ତ ସେମିତି ମନେ ହେଲା ।

ବାବୁଲ୍ ।। ହେଇପାରେ···କୋଉଠି କାହା ଘର ଭିତରେ ପଶି ଯାଇଥାଇପାରେ ।

ଦୀପେନ ।। ପାଖରେ ତ କୋଉଠି ଘର ନ ଥିଲା, ଏଇ ତ ଏକମାତ୍ର ତୋର ଘର ।

ବାବୁଲ୍ ।। ଯଦି ଥାନାରେ ଯାଇ ରିପୋର୍ଟ କରିଦେବ ନା, ତୋର ହାଲୁଆ ଟାଇଟ୍ ହୋଇଯିବ ଓସ୍ତାଦ୍···ଦେଖି ଶୁଣି କାମ କର···ଶଳା, ପୋଲିସ୍ ଗୋଡ଼େଇଛ ଯେତା' ପଛରେ ।

ଦୀପେନ୍ ।। କାନ୍ ଖୋଲିଯିବ ପଛେ ଗୁଣ୍ଡାବାଜ, ଓସ୍ତାଦ୍ ! ଦୀପେନ୍ ଦାସ ସାଙ୍ଗରେ ଖୁବ୍ କମ୍ ଟିଅ ଖେଳନ୍ତି । ଶାଳୀ ଏକଦମ୍ ଟ୍ରେଲ୍··· ଆଜି ତାର ମଜା ଛଡ଼େଇ-ଦେଉଛି ରହ ।

ବାବୁଲ୍ ।। ତତେ ହଜାର ଥର ମନା କରିଛି ଏ ଟୋକୀଧନ୍ଦା ଛାଡ଼ ଦୀପେନ୍ ! ଫସିଯିବୁ କୋଉଦିନ !!

ଦୀପେନ୍ ।। ( କିଛି ଗୋଟାଏ ଶୁଙ୍ଘିଲା ଭଳି ) ଗୋଟାଏ ସେଣ୍ଟ ବାସ୍ନା ଆସୁଛି କୋଉଠୁ ?

ବାବୁଲ୍ ।। ସେଣ୍ଟ ? ଆମେ ତ ସେମିତି ଗନ୍ଧ ନେ ହୁ, ଓସ୍ତାଦ୍ !

ଦୀପେନ୍ ।। ଠିକ୍ ଏମିତି ଗୋଟାଏ ସେଣ୍ଟ କାକଳୀ ମିଶ୍ର ବ୍ୟବହାର କରେ ।

ବାବୁଲ୍ ।। କାକଳୀ ମିଶ୍ରର ଭୂତ ତତେ ଲାଗିଛି ।

ଦୀପେନ୍ ।। ଝିଅଟା ଏଇଠି କୋଉଠି ପଶିଗଲା କି ଆଉ ?

ବାବୁଲ୍ ।। ଏଁ ? ପାଗଳ···! ଶଳା ତୁ ପାଗଳ ହୋଇଗଲୁଣି, ଓସ୍ତାଦ୍ !

ଦୀପେନ୍ ।। ଟୋକୀଟାକୁ ପାଇଥିଲେ ଆଜି କାନ୍ ଖଚରନାକ୍ କରିଦିଅନ୍ତି···

ବାବୁଲ୍ ।। ସେଇଟା କିନ୍ତୁ ଅନ୍ୟାୟ । ନା କ'ଣ କହୁଚୁ ଓସ୍ତାଦ···? ଲୋ ମର୍ଦାନି ଦେଖେଇବୁ ତ ଦେଖେଇବା ଜାଗାରେ···ଟୋକୀଙ୍କ ପାଖରେ କ'ଣ ?

ଦୀପେନ୍ ।। ଚୁପ୍ ଶାଳା ମାଇଆ ! ଖୁବ୍ ଉପଦେଶ ଦଉଛି !

ବାବୁଲ୍ ।। ଓସ୍ତାଦ୍ ! ଆସ୍ତେ···ଆସ୍ତେ···

ଦୀପେନ୍ ।। (ଛୁରୀଟା ବାହାର କରି) ଦେବି ଶଳାକୁ !

ବାବୁଲ୍ ।। ହଠାତ୍ ତୋର ଫୋର୍ସଟା ମୋ' ପାଖରେ ଦେଖାଉ ।

ଦୀପେନ୍ ।। କାକଳୀକି ନେଇ ମୁଁ କ'ଣ କରିବି ନ କରିବି ତୁ' କହିବା ପାଇଁ କିଏ ବେ ? ଜିନ୍ଦେଗୀରେ ଟୋକୀ ଦେଖିଛୁ କେବେ ?

ବାବୁଲୁ ॥ ଦେଖିବା ଦରକାର ନାହିଁ, ଭାଇ ! ଅନ୍ଧାରରେ ଏମିତି ଶକ୍ତିକ୍ଷୟ କରିବା ଲୋକ ଆମେ ନୋହୁଁ ।

ଧୀପେନ୍ ॥ ମତେ ରାଗାନା, କହୁଚି ।

ବାବୁଲୁ ॥ ଦେଖ୍ ଭାଇ, ମତେ ବନ୍ଧୁ ବୋଲି ଭାବୁଚୁ ତ ?

ଧୀପେନ୍ ॥ ଯେଉଁ ପର୍ଯ୍ୟନ୍ତ ଏକ ଗ୍ଲାସ୍ ରେ ଆସି ମୋ ବାଟରେ ଠିଆ ନ ହେଉଚୁ ସେ ପର୍ଯ୍ୟନ୍ତ ତୁ ମୋ ବନ୍ଧୁ । ଗ୍ଲାସ୍ଟା ଅଟକାଇଲେ···( ଖଟ୍ କରି ସ୍ପ୍ରିଙ୍ଗ୍ ଛୁରୀଟା ଦେଖେଇଲା )

ବାବୁଲୁ ॥ ଅନେକ ଦିନ ଧରି ସେ ଝିଅଟାର ପିଛା ଧରିଥିଲୁ ବୋଲି ଜାଣିଚି । ହଠାତ୍ କ'ଣ ହେଲା ? ଛୁରୀଟା ବନ୍ଦ କରିଦେ' । ମୋ ଆଗରେ ସେଗୁଡ଼ା ଦେଖାନା ।

ଧୀପେନ ॥ ଧୀପେନ୍ ସବୁ ସହିପାରେ, ଧୋକା ସହିପାରେନା ।

ବାବୁଲୁ ॥ ତୁ'ତ କହୁଥିଲୁ କ୍ଷମା ମାଗିନେଲେ ଛାଡ଼ିଦବୁ ବୋଲି ।

ଧୀପେନ୍ ॥ କ୍ଷମା ? ସେ ଶଳା ଟୋକାର ତାଉ ଦେଖିନୁ ଓସ୍ତାଦ···ହକାରେ ଘାଟର ପାଣି ପିଇଲାବାଲା !

ବାବୁଲୁ ॥ ଏମିତି ଜାଗାରେ କ'ଣ ପ୍ରେମ କରାଯାଏ ?

ଧୀପେନ୍ ॥ ଆରେ, ଗୋଲି ମାର ସେଇ ପ୍ରେମକୁ । ସେଗୁଡ଼ା ମାଇଚିଆ କଲେଜ ଟୋକା କରିବେ ।

ବାବୁଲୁ ॥ କେଜାଣି ଶଳା, ସେ ପ୍ରେମ-ଫ୍ରେମରୁ ମୁଁ କିଛି ବୁଝେନା ।

ଧୀପେନ୍ ॥ ତେବେ ? ଉପଦେଶ ଦଉଚୁ !

ବାବୁଲୁ ॥ ଅନ୍ୟାୟ ମୁଁ ଭଲ ପାଏନ । ଝିଅଟେ ସାଙ୍ଗରେ ଦୁଷ୍ମନି ଗୋଟେ କ'ଣ ? ଶଳା ଝିଅକୁ ଛୁରୀ ମାରି ଗୁଣ୍ଡା ହବୁ ? ମସ୍ତାନି ଦେଖେଇବା ପାଇଁ ଜାଗା ମିଳିଲାନି ଆଉ କୋଉଠି ? ପାରିବୁ ଯଦି ତାରପଦଟାକୁ ଉଡ଼େଇ ଦଉନୁ ?

ଧୀପେନ୍ ॥ ଓସ୍ତାଦ୍ !! (ପୁଣି ଥରେ ବୋତାମ୍ ଟିପି ଛୁରୀଟା ବାହାର କରିଚି)

ବାବୁଲୁ ॥ ମାରିବୁ ମତେ ?

ଧୀପେନ୍ ॥ ଆଉ ପଦେ ଅଧିକା ଉପଦେଶ ଦେଲେ ମାରିବି ।

ବାବୁଲୁ ॥ ଠିକ୍ ଅଛି, ଉପଦେଶ ଦେବିନି ।

[ ଧୀପେନ୍ ପକେଟରୁ ବୋତଲଟା ବାହାର କରି ପିଇଚି ]

ଧୀପେନ୍ ॥ ପିଇବୁ ? ନେ'......

ବାବ୍‌ଲୁ ।। (ପିଇଛୁ ଓ ଧାପେନର ତଣ୍ଟିକୁ ଚିପି ଧରି) ତତେ ଚିରି ଫାଡ଼ିଦବାକୁ ଇଚ୍ଛା ହଉଚି ।

ଧାପେନ୍ ।। ବାବ୍‌ଲୁ !

ବାବଲୁ ।। ସ୍ପଷ୍ଟ ତ ଛୁରୀ ଦେଖଉଚୁ ଆଜ୍ଞା ? ମତେ ଚହ୍ନି ପାରୁନୁ ?

ଧାପେନ୍ ।। ମୁଁ ଜାଣେ ମୋ ଉପରେ ତୁ ରାଗିଚୁ । ନାଇଁ ?

ବାବ୍‌ଲୁ ।। ନା, ତୋ ବାଟ ଅଲଗ —ମୋ ବାଟ ଅଲଗା···

ଧାପେନ ।। ମୁଁ ଜାଣେ ମୋ ଉପରେ ରାଗିଚୁ । ପ୍ରଥମେ ଯୋଉଦିନ ମଣ୍ଟୁ ତତେ ନେଇ ଫଜଲ୍ ମିଆଁ ଘରକୁ ଆଣିଲା ମୁଁ ଜାଣିଲି, ତତେ ଠିକ୍ ଚହ୍ନିବା ପାଇଁ ମୁଁ ସକ୍ଷମ ହେଇପାରୁନି, ତୁ···ମାନେ··· ଶଳା, କ'ଣ କହିବି ବୁଝିପାରୁନି···ତୁ ଆମ ଜାତିର ମଣିଷ ନୋହୁ । ତୁ କାଇଁକି ଯେ ବେଳେବେଳେ ଡକେଇତି କରୁ, ମାରପିଟ ଯେ କେମିତି ହୁଏ···ତୋ ହାତରେ ଛୁରୀ ଯେ କେମିତି ରହିଲେ ମୁଁ ଜାଣିପାରେନା । ମୋର ମନେହୁଏ ତୁ ଭଦ୍ରଲୋକ ।

ବାବଲୁ ।। ହାତଟା ମୋର ଠିକ୍ ଶକ୍ତ ଅଛି । ଛୁରୀ ଠିକ୍ ରହିଲେ । ଏ ପର୍ଯ୍ୟନ୍ତ ପୋଲିସ୍‌ରେ ମୋ ନାଁରେ ଦଶଟା କେଶ୍···

ଧାପେନ୍ ।। ତା'ହେଲେ ତ ମତେ ଠିକ୍ ବୁଝିପାରୁଥିବୁ ।

ବାବ୍‌ଲୁ ।। କିନ୍ତୁ ଛୁରୀ ଚଳେଇ କିଏ ତ ପ୍ରେମ କରିପାରେନା, ଅନ୍ତତଃ ମୁଁ କୋଉଠି ଦେଖିନି ।

ଧାପେନ ।। ମୁଁ ଏ ପର୍ଯ୍ୟନ୍ତ ଛୁରୀ ସାହାଯ୍ୟରେ ସବୁ କାମ କରିଚି । ଛୁରୀ ସାହାଯ୍ୟରେ ସବୁ କାମ ହେଇପାରେ ବୋଲି ମୋର ବିଶ୍ୱାସ ।

ବାବ୍‌ଲୁ ।। ତା'ହେଲେ ମୋର କିଛି କହିବାର ନାହିଁ । ତୋ' ଫଳ ତୁ ପାଇବୁ !

ଧାପେନ୍ ।। ବେଶ୍, ତା'ହେଲେ ମିଳିଓ ହାତ୍ । ଆମେ ଯିଏ ଯା'ର କାମ କରିବା । କାହା ପାଇଁ କେହି କିଛି କହିବା ନାଇଁ, ରାଜି ?

ବାବଲୁ ।। ରାଜି ।

ଧାପେନ୍ ।। ତା'ହେଲେ ପେଟ ଭିତରେ ଆଉ ବିଷ ରଖନା । ସବୁ ଝଗଡ଼ା ଭୁଲିଯା'··· ।

ବାବଲୁ ।। ବେଶ୍, ତା'ହେଲେ ମୋ ଆଗରେ ଆଉ ଦିନେ ଛୁରୀ ବାହାର କରିବୁ ନାଇଁ ।

ଘାପେନ୍ ॥ କିନ୍ତୁ ଓସ୍ତାଦ୍ ! ତୋ ମୁହଁଟା ଦେଖିଲେ ଜଣାପଡ଼ୁଚି ଯେମିତି ତୁ' ଆଜି ଗୋଟାଏ କିଛି ଖବୁଚୁ !

ବ ବ୍‌ଲୁ ॥ ନା, କିଚି ନାହିଁ, ସବୁ ଠିକ୍ ହେଇଯିବ । ମୁଁ ହଠାତ୍ ତୋ ଉପରେ ରାଗଯାଇଥିଲି ।

ଘାପେନ ॥ ହଉ, ମୁଁ ଚଲିଲି ଓସ୍ତାଦ୍ ! କିନ୍ତୁ କା'କଲୀକି ମୁଁ ଛାଡ଼ିବି ନାହିଁ···ତା'କୁ ଶେଷ ନ କରି ମୁଁ ଛାଡ଼ିବି ନାହିଁ । ଯାଉଚି ଓସ୍ତାଦ୍, ପୁଣି କେବେ ଦେଖା ହବ ଠିକ୍ ନାହିଁ···

[ ଘାପେନ ଚଲିଗଲା ବାହାର ରାସ୍ତା ଦେଇ । କିଛି ସମୟ ପରେ ଶୁଣାଗଲା ବାହାରେ ଗୁଡ଼ିଏ ଦୌଡ଼ାଦୌଡ଼ି···ମଚମଚ ଜୋତାର ଶବ୍ଦ··· ପୋଲିସ୍ ହୁଇସିଲ୍ । ବାବଲୁ ଦୁଆର ବନ୍ଦ କରୁଛି । ବାହାରି ଆସିଚି କାକଲୀ । ]

କାକଲୀ ॥ ଚଲିଗଲା ?

ବାବ୍‌ଲୁ ॥ ଅଳ୍ପକେ ରକ୍ଷା ପାଇଗଲି ।

କାକଲୀ ॥ ଇସ୍, କି ଅସନା ଘର··· !

ବାବ୍‌ଲୁ ॥ ମୁହଁସାରା ଅଳନ୍ଧୁ ଲାଗିଚି, ପୋଛିଦିଅ ।

କାକଲୀ ॥ ଭୟଙ୍କର ଛିଙ୍କ ଆସୁଥିଲା । ଭିତରେ ଦୁର୍ଗନ୍ଧ, ବଲେଇ, ମୂଷା, ଅସରପା···ମନେ ହେଉଥିଲା ଦମ୍ ଅଟକି ଯିବ—ଆଉ ମୁହୂର୍ତ୍ତେ ସେଠି ରହିପାରିବି ନାହିଁ । ଦର୍ପଣ ଅଛି ?

ବାବ୍‌ଲୁ ॥ (ଗୋଟେ ଦର୍ପଣ ବାହାର କରି) ମୁହଁଟା ଠିକ୍ କରିନିଅ ।

କାକଲୀ ॥ ଲୁଗାଟା ବି ଭିଜି ଯାଇଚି । ( ମୁହଁ ଦେଖି ) ଇସ୍···ଛି-ଛି-ଛି···ଟିକିଏ ପାଣି ପିଇବାପାଇଁ ମିଳିପାରିବ ?

ବାବଲୁ ॥ ପାଣି ? ଦେଖେ, ସୁରେଇରେ ଅଛି କି ନାହିଁ !!

କାକଲୀ ॥ ଆପଣଙ୍କ ନାଁ ତା'ହେଲେ ବାବ୍‌ଲୁ ?

ବାବଲୁ ॥ ଶୁଣିଲ ତ ?

କାକଲୀ ॥ ଆପଣ ବି ଘାପେନ୍ ଟାଇପ୍‌ର ଗୋଟେ ଲୋକ ?

ବାବ୍‌ଲୁ ॥ ସବୁ ତ ଶୁଣିଲ, ପୁଣି କ'ଣ ପଚାରୁଚ ?

କାକଲୀ ॥ ଛୁରୀ ଚଳେଇଲାବେଳେ ହାତଟା ଥରେନି ?

ବାବ୍‌ଲୁ ॥ (ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ) ଧୀପେନ୍ ସାଙ୍ଗରେ ପ୍ରେମ କରୁଥିଲ ?

କାକଲୀ ॥ ନା, କିଛିଦିନ ଆମର ଦେହର ସମ୍ପର୍କ ଥିଲା ।

ବାବ୍‌ଲୁ ॥ ଖାଲି ଧୀପେନ୍ ସାଙ୍ଗରେ ନୁହେଁ, ଅନ୍ୟମାନଙ୍କ ସାଙ୍ଗରେ ମଧ୍ୟ । ମୁଁ ତମକୁ ଜାଣେ ।

କାକଲୀ ॥ ମୋ ସମ୍ପର୍କରେ ଧୀପେନ୍‌ଠୁ ଯାହା ଶୁଣିଛନ୍ତି ସବୁ ଭୁଲ୍ ।

ବାବ୍‌ଲୁ ॥ ଭୁଲ୍ ହେଉ କି ଠିକ ହେଉ, ମୁଁ ଖାଲି ଏଗୁଡ଼ାକ କେୟାର୍ କରେନା ।

କାକଲୀ ॥ ମତେ ବଞ୍ଚେଇ ଦେଇଛନ୍ତି; ସେଥିପାଇଁ ଅନେକ ଧନ୍ୟବାଦ !

ବାବ୍‌ଲୁ ॥ ବର୍ତ୍ତମାନ କ'ଣ କରିବ ?

କାକଲୀ ॥ କ'ଣ କରିବି ?

ବାବ୍‌ଲୁ ॥ ତମକୁ ବସାରେ ନେଇ ଛାଡ଼ିଦେଇଆସିବି ?

କାକଲୀ ॥ (ଭୟରେ ଶିହରିଉଠି) ନା, ଧୀପେନ୍ ଆଜି ରାତିସାରା ମୋ ଘର ଚାରିପଟେ ପହରା ଦେବ । ଧୀପେନର ଅନେକ ବନ୍ଧୁ··· ତା' ଛଡ଼ା···

ବାବ୍‌ଲୁ ॥ ତା' ଛଡ଼ା ?

କାକଲୀ ॥ ମୁଁ ଗୋଟାଏ ଚକ୍ରାନ୍ତ ଭିତରେ ପଶିଯାଇଛି ।

ବାବ୍‌ଲୁ ॥ ଝିଅମାନେ ନିଜକୁ ବେଶୀ ଚାଲାକ୍ ବୋଲି ଭାବିଲେ ଯାହା ହୁଏ !

କାକଲୀ ॥ ତାରାପଦବାବୁ ଅଛି । ଦୀନମଣି ଅଛି । ସେଠିକି ଗଲେ ମୁଁ ପୁଣି ସେଇ ଅନ୍ଧାର ଭିତରେ ବାଟ ପାଇବିନି । ମୋର ମନେ ହେଉଛି, ଗୋଡ଼ ଖସେଇ ଖସେଇ ମୁଁ ଗୋଟାଏ ଏକମୁହାଁ ରାସ୍ତା ଭିତରକୁ ପଶିଯାଇଛି···ପଛରେ ସବୁ ଦରଜା ବନ୍ଦ···ଆଉ ଫେରିବାର ଉପାୟ ନାହିଁ ।

ବାବ୍‌ଲୁ ॥ ( ଦରଜା ପାଖକୁ ଆସି କାନ ପାତି ଶୁଣିବା ଏବଂ କେହି ନ ଥିବା ଲକ୍ଷ୍ୟକରି ) ତମେ ଏଥର ଚାଲିଯାଇପାର । ଡେରି ହେଲେ ଯେକୌଣସି ମୁହୂର୍ତ୍ତରେ ଆସିଯାଇପାରନ୍ତି ।

କାକଲୀ ॥ କୁଆଡ଼େ ଯିବି ? ସେମାନେ ନିଶ୍ଚୟ ଘର ପାଖରେ ପହରା ଦେଉଥିବେ ।

ବାବ୍‌ଲୁ ॥ ତା' ହେଲେ ପୋଲିସ୍ ପାଖକୁ ଚାଲିଯାଅ ।

କାକଲୀ ॥ କ'ଣ କହିଲେ ? ପୋଲିସ୍ ଷ୍ଟେସନ୍ ? ତା' ପୁଣି ଏଇ ଝଡ଼ବର୍ଷାର ରାତିରେ ? ପୋଲିସ୍‌ରେ କ'ଣ ମୁଁ ନିରାପଦ ରହିବି ବୋଲି ଆପଣ ଭାବୁଛନ୍ତି ?

ବାବ୍‌ଲୁ ॥ ତା' ହେଲେ ? ତା' ହେଲେ କ'ଣ କରିବ ?

କାକଳୀ ॥ ମତେ ଆପଣ ଟିକିଏ ଆଶ୍ରୟ ଦେଇପାରିବେନି ?

ବାବ୍‌ଲୁ ॥ ମୁଁ ?

କାକଳୀ ॥ ହଁ । ଆପଣଙ୍କ ସ୍ୱର ଭିତରେ କିଛି କିଛି ବୁଝିହେଉଚି ।

ବାବ୍‌ଲୁ ॥ ମତେ କ'ଣ ବୁଝିହେଉଚି ?

କାକଳୀ ॥ ଅନ୍ତତଃ ଏତିକି ଯେ ଆପଣ ମୋର କୌଣସି କ୍ଷତି କରିବେନି । ମାନେ, ଆପଣଙ୍କୁ ମୁଁ ଅବିଶ୍ୱାସ କରିପାରୁନି ।

ବାବ୍‌ଲୁ ॥ ମୁଁ ଧାଟପନ୍‌ର ବନ୍ଧୁ ଓ ଛୁରୀ-ପିସ୍ତଲ ନେଇ ମୋର କାରବାର ବୋଲି ଜାଣିଲା ପରେ ସୁଦ୍ଧା ?

କାକଳୀ ॥ ହଁ, ଆପଣଙ୍କୁ ଦେଖିଲେ ମତେ ଭୟ ଲାଗୁନି ।

ବାବ୍‌ଲୁ ॥ ଏତେଟା ଭରସା କରିବା ଉଚିତ ହେଉନି । ତା'ଛଡ଼ା, ତମକୁ ଏଇ ଅବସ୍ଥାରୁ ବଞ୍ଚେଇବା ନିହାତି ମୁସ୍କିଲ୍ କଥା ।

କାକଳୀ ॥ ନା, ଏଇ କିଛି ସମୟ ତଳେ ଆପଣ ମତେ ଏକ ବିରାଟ ଅସୁବିଧାରୁ ବଞ୍ଚାଇଛନ୍ତି । ଏବଂ ମୋର ବିଶ୍ୱାସ, ଆପଣ ମତେ ବଞ୍ଚାଇବେ ମଧ୍ୟ ।

ବାବ୍‌ଲୁ ॥ କାହାର ଜୀବନ ମୋ'ପାଖରେ ମୂଲ୍ୟବାନ୍ ନୁହେ ।

କାକଳୀ ॥ ନା, ଆପଣ ମିଛ କହୁଛନ୍ତି । ଧାଟପନ୍ ସାଙ୍ଗରେ କଥା ହେଲା ବେଳଠୁ ମୁଁ ଆପଣଙ୍କ ମନଟା ବୁଝିଛି । ସେଇଟା ହିଁ ମୋର ଭରସା । ଆପଣ ଡକେଇତି କରନ୍ତୁ କି ଖୁନ୍ କରନ୍ତୁ ଅନ୍ତତଃ ଏତିକି ଜାଣିଛନ୍ତି ଯେ ଜୋର୍‌କରି କାହାର ମନ କିଣା ଯାଇ ପାରେନା । ( ଟିକିଏ ପରେ ) ଆପଣ ତ ଜାଣନ୍ତି ଧାଟପନ୍ ମତେ ନେଇ କ'ଣ କରିବାକୁ ଚାହେଁ । ଏଇ ଅବସ୍ଥାରେ ମୁଁ ଆଉ ଘରକୁ ଯାଇପାରିବି ନାହିଁ । ଏଇଠି ରହିଲେ ବି ଜୀବନ ବିପଦ···ପ୍ଲିଜ୍···( ପାଖକୁ ଆସି ) ଏମିତି ଗୋଟାଏ ଅସହାୟ ଅବସ୍ଥାରେ ପକେଇଦେଇ ଆପଣ ଚାଲିଯାଇପାରିବେ ?

ବାବ୍‌ଲୁ ॥ ଓଃ ! କି ହଇରାଣରେ ପଡ଼ିଲି ମଣିଷ ! ଆସ, ଦରଜା ପାଖକୁ ଆସ । ପାଟି କରିବନି । ଯେଉଁ ପର୍ଯ୍ୟନ୍ତ ମୁଁ କିଛି କହିବିନି ସେ ପର୍ଯ୍ୟନ୍ତ ଚାଲିବ । ପାଟି କରିବନି । ହଁ, ଶାଢ଼ିଟା ଭଲଭାବେ ପିନ୍ଧ । ଓଢ଼ଣାଟା ଦିଅ—( ଦରଜାଟା ଖୋଲି ) କୁଆଡ଼େ ଯିବ ? ଥାନାକୁ ?

କାକଳୀ ॥ ( ଦରଜା ପାଖକୁ ଆସି ) ନା, ଯିବାପାଇଁ ଇଚ୍ଛା ହେଉନି ।

ବାବ୍‌ଲୁ ॥ କେଉଁଠିକି ଯିବା ପାଇଁ ତା' ହେଲେ ଇଚ୍ଛା ହେଉଚି ?

କାକଳୀ ।। ପୋଲିସ୍ ପାଖକୁ ଯିବା ପାଇଁ କାହିଁକି କେଜାଣି ଇଚ୍ଛା ହେଉନ ମୋର। ପଚ୍ଛେଶ ପ୍ରକାର ପ୍ରଶ୍ନ ପଚ୍ଛରିବେ। ଆଉ ଯଦି ସେମାନେ ମତେ ସେଇଠି ଗ୍ୱଢଣ୍ଟା ରଖି ଦିଅନ୍ତି ନା…

ବାବ୍‌ଲୁ ।। କିନ୍ତୁ ବର୍ତ୍ତମାନ ଅବସ୍ଥା ଯାହା ପୋଲିସ୍ ପାଖକୁ ଯିବା ବେଶୀ ଉଚିତ ବୋଲି ମୋର ଧାରଣା।

କାକଳୀ ।। ଆପଣ ମୋ ଲାଗି ହଇରାଣ ହେଲେ, ନା?

ବାବ୍‌ଲୁ ।। ଛାଡ଼। କ'ଣ କରିବା କୁହ।

କାକଳୀ ।। ଆପଣ ବର୍ତ୍ତମାନ ଯିବେ କେଉଁଠିକି?

ବାବ୍‌ଲୁ ।। ଜାଣେନା।

କାକଳୀ ।। କୋଉଠିକି ଯିବେ ଜାଣନ୍ତିନ?

ବାବ୍‌ଲୁ ।। ଜାଣେ ନା।

କାକଳୀ ।। ଆଦୌ ଜାଣନ୍ତି ନ?

ବାବ୍‌ଲୁ ।। ନା, କିନ୍ତୁ ସେଇଟା ତମର କ'ଣ ଦରକାର? ବରଂ ତମେ କୁଆଡ଼େ ଯିବ ସେଇଟା ଏଇଠୁ ବାହାରିବା ପୂର୍ବରୁ ମୋର ଜାଣିବା ଦରକାର। ଏବଂ…

କାକଳୀ ।। ଏବଂ… ?

ବାବ୍‌ଲୁ ।। ପିପେନ୍ କୋଉଠି ଅଛି ପୋଲିସ୍‌ରେ କହିବ ନାହିଁ। କାରଣ ସେ ଯେମିତି ଧରା ନ ପଡ଼େ ସେଇଟା ଦେଖିବା ମୋର କର୍ତ୍ତବ୍ୟ।

କାକଳୀ ।। ତା' ମାନେ ସେଇଟା କ'ଣ ମୋର ମଧ୍ୟ କର୍ତ୍ତବ୍ୟ? ଆପଣ ଠିକ୍ ଏ ଭାବି ଦେଖନ୍ତୁ ଲୋକଟା ମତେ ଖୁନ୍ କରିବାକୁ ଚାହେଁ…ତାକୁ ମୁଁ ପୋଲିସ୍‌ରେ ନ ଦେଇ ଛାଡ଼ିଦେଇପାରେ?

ବାବ୍‌ଲୁ ।। ଅବଶ୍ୟ ଠିକ ଆଉ ତମେ ଠିକ୍ କହୁଛ। କିନ୍ତୁ ଏଇଟା ବି ମନେ ରଖିଥିବ, ପିପେନ୍ ସାଙ୍ଘାତିକ ଟୋକା। ଆଜି ତା' ହାତରୁ ଖସିଗଲେ ବି ଚିରଦିନ ତା'ହାତରୁ ଖସିବା ମୁସ୍କିଲ। ସେ ହଜାର ଥର ଜେଲ୍ ଗଲେ ବି ଫେରିଆସି ତମକୁ ଯାହା କରିବା କଥା କରିବ।

କାକଳୀ ।। ମୁଁ ଜାଣେ। ସେଇଥିପାଇଁ କହୁଛି…

ବାବ୍‌ଲୁ ।। ଆଶ୍ଚର୍ଯ୍ୟ! କିଅଟା କଣ ଯେ କହୁଛ…ତା'ମାନେ ତମକୁ ମୁଁ ଜୀବନସାରା ଏଇଠି ରଖିବି ନା କ'ଣ?

ଃ ଷୋହଳ ଃ

କାକଳୀ ।। (କିଛି ସମୟ ପରେ) ଆଶ୍ଚର୍ଯ୍ୟ ଲାଗୁଛି ।

ବାବ୍‌ଲୁ ।। କଣ ପାଇଁକି ?

କାକଳୀ ।। ତୁମକୁ ଦେଖି ।

ବାବ୍‌ଲୁ ।। କେମିତି ?

କାକଳୀ ।। ତୁମେ ଯେ ଧାପେନ୍‌ର ବନ୍ଧୁ ଏବଂ ଚୋରି କରିଚ, ଜେଲ୍ ଯାଇଚ··· ଗୁଣ୍ଡାମି କର···ଏଇ ସବୁ କଥା ।

ବାବ୍‌ଲୁ ।। ବାକେ କଥା ଗୁଡ଼ାଏ କୁହନା । ଶଳା. ଅଜବ ଗୋଟାଏ ଟୋକୀ ହାବୁଡ଼ରେ ପଡ଼ିଲି ମଣିଷ ।

କାକଳୀ ।। ସତରେ ! ପୃଥିବୀରେ କେତେ ଆଶ୍ଚର୍ଯ୍ୟ ଘଟଣା ସବୁ ଘଟୁଚି ।

ବାବ୍‌ଲୁ ।। କେମିତି ?

କାକଳୀ ।। ଏଇ, ମୁଁ ଯେମିତି ଏଠି ତୁମ ବସାରେ ପହଞ୍ଚିଗଲି ।

ବାବ୍‌ଲୁ ।। ତୁମେ ତା'ହେଲେ କ'ଣ କହୁଚ, ସିଧା କହୁନ କାହିଁକି ଯେ ? ଏଇଠି ରାତିରେ ରହିବ ?

କାକଳୀ ।। ତା' ଛଡ଼ା ମୋର ଅନ୍ୟ ଉପାୟ ନାହିଁ ଦେଖୁଚି ।

ବାବ୍‌ଲୁ ।। ତା'ହେଲେ ରୁହ, ମୁଁ ଚାଲିଲି । ଆଉ କୋଉଠି ଶୋଇଯିବି ।

(ଯିବା ଉଠିଲା)

କାକଳୀ ।। ନାହିଁ, ନାହିଁ, ନାହିଁ···ତୁମେ କୁଆଡ଼େ ଯାଉଚ ? ମୁଁ ଏଇଠି, ଏଇ ଘରେ ଏକଲା ରହିଯିବି ? ଅସମ୍ଭବ ।

ବାବ୍‌ଲୁ ।। ତା' ହେଲେ ? ମତେ ବି ରହିବାକୁ ପଡ଼ିବ ?

କାକଳୀ ।। ନ ହେଲେ କେମିତି ରହିବ ? ଡର ମାଡ଼ିବନି ?

ବାବ୍‌ଲୁ ।। ମୁଁ ସେଥିପାଇଁ ଦାୟୀ ନୁହେଁ । ଶଳା, ଆଚ୍ଛା ଧନ୍ଦା ଇଏ···!

କାକଳୀ ।। ଏତେ ବଡ଼ ବଡ଼ କଥା କହୁଚ, ଗୋଟେ ଝିଅକୁ ରାତିକ ପାଇଁ ଆଶ୍ରୟ ଦେଇପାରିବନି ?

ବାବ୍‌ଲୁ ।। କାହିଁକି ଦେଇପାରିବିନି ? କିନ୍ତୁ କି ଅଦ୍ଭୁତ କଥା, ଏଠି କେମିତି ରହିବ ? ତା'ଛଡ଼ା ଏଠି ତ ଶୋଇବା ପାଇଁ ସେମିତି କିଛି ବ୍ୟବସ୍ଥା ନାହିଁ···

କାକଳୀ ।। ମସିଣା ଖଣ୍ଡେ ନାହିଁ ଏଠି ?

ବାବ୍‌ଲୁ ।। ଖଣ୍ଡେ ପଡ଼ିଥିବ ଉପରେ ସେ ଘରେ ।

କାକଳୀ ।। ସେ ଘରଟା ତ ଗୋଟାଏ ଜଙ୍ଗଲ । ଚୁଲି ଶୁଣୀ ଅଛି ?

ବାବ୍‌ଲୁ ।। ଦେଖ ସେ ଘରେ ଯାହା ଥିବ । ଏତେ ସବୁ ଜିନିଷ କ'ଣ ଦରକାର ହଉଚି ? ଇଏ ତ ମୁଁ ଯାହା ଦେଖୁଚି ପର୍‌ମାନେଣ୍ଟ୍ ବ୍ୟବସ୍ଥା !

କାକଳୀ ॥ ନାହିଁ; ତମ ଘରକୁ ଯିଏ ଆସିବା କଥା ବାହା ହେଲା ପରେ ଆସିବେ ; ସିଏ ଯାଇ ସେ ବ୍ୟବସ୍ଥା କରିବେ । ତଥାପି ମୁଁ ଯେତିକି ସମ୍ପତ୍ତି ଅଛି ଏଇଟାକୁ ଘରଭଳି ସଜେଇବାକୁ ପଡ଼ିବ ।

ବାବ୍ଲୁ ॥ ରାତିରେ ଖାଇବ କ'ଣ ?

କାକଳୀ ॥ ତମେ ଯାହା ଖାଅ···

ବାବ୍ଲୁ ॥ ମୁଁ···ଅନ୍ୟ କୋଉଠି ଖାଇପାରେ । ମୋର କିଛି ଠିକଣା ନାହିଁ ।

କାକଳୀ ॥ ତା'ହେଲେ ମୁଁ ଷ୍ଟୋଭରେ ରାନ୍ଧିଯିବି ।

ବାବ୍ଲୁ ॥ କିନ୍ତୁ ଏଇ ଓଦା ଗାଡ଼ିଟାରେ ରାତିଟେ ରହିବ କିମିତି ?

କାକଳୀ ॥ ଜୀବନଟା ବଞ୍ଚିଗଲା । ଟିକିଏ ଅଣ୍ଡା ଧରିଲେ ଧରିବ, ଯାଏ ଆସେ ନାହିଁ ।

ବାବ୍ଲୁ ॥ ତା' ଅବଶ୍ୟ, କିନ୍ତୁ···ଯେହେତୁ ତମେ ରାତିକ ପାଇଁ ମୋର ଅତିଥି···

କାକଳୀ ॥ ମୋ' ଘରେ ମୋର ଶାଢ଼ି ଅଛି, ବେଡିଙ୍ଗ୍ ଅଛି ।

ବାବ୍ଲୁ ॥ ତମ ଘର ? ତମ ଘରଟା କୋଉଠି ?

କାକଳୀ ॥ ଗ୍ଲୋବ୍ ସିନେମା ପାଖ ଦେଇ ଯୋଉ ଗଳିଟା ଯାଇଚି ସେଇ ଭିତରେ ପ୍ରାୟ ଶହେ ଗଜ ଆଗକୁ ଗଲେ ବାଁପଟେ ଗୋଟାଏ ଟାଇଲ୍ ଘର ପଡ଼ିବ । ଯେକୌଣସି ଲୋକକୁ ପଚାରିଲେ କହିଦେବେ । (ଟିକିଏ ରହି) କାହିଁକି, ତମେ ଯାଇ କ'ଣ ମୋ' ବାକ୍ସ ଆଉ ବେଡିଙ୍ଗ୍ ନେଇଆସିପାରିବ ?

ବାବ୍ଲୁ ॥ ଥାଉ, ଏତେ କଥା ମୁଁ କରିପାରିବିନି ।

କାକଳୀ ॥ କାଳେ ଦୀପେନ୍‌ର ଲୋକ ସେଠି ପହରା ଦେଉଥିବେ । ତମେ ମତେ ସାହାଯ୍ୟ କରୁଚ ବୋଲି ଜାଣିଲେ ତମ ଜୀବନ ବିପନ୍ନ ହବ !

ବାବ୍ଲୁ ॥ କ'ଣ ହବ ? ମୁଁ ଦୀପେନ୍‌କୁ ଡରିଚି ?

କାକଳୀ ॥ ଦୀପେନ୍‌ଟା ଗୋଟେ ମର୍ଡରର୍ । ତମେ କ'ଣ ତା'ଭଳି ହେଇପାରିବ ?

ବାବ୍ଲୁ ॥ ମୁଁ କେଉ ଦୀପେନ୍‌କୁ ଖାତିର୍ କରେନା । ନାହିଁ, ସେ ଘରର ଚାବି ଦିଅ । ମୁଁ ଅଲ୍‌ବତ୍ ସେଠିକି ଯିବି ଆଉ ବେଡିଙ୍ଗ୍ ବାକ୍ସ ନେଇ ଆସିବି ।

କାକଳୀ ॥ ଥାଉ । କାଳେ ତମକୁ ସେମାନେ···

ବାବ୍ଲୁ ॥ ଷ୍ଟେପ୍ । ଚାବି ଦିଅ ।

କାକଳୀ ॥ ( ଚାବି ଟା ଦେଇଚି ହାତ ବ୍ୟାଗ୍‌ରୁ ବାହାର କରି ) ସତର୍କ ରହିବ ।

ବାବ୍ଲୁ ॥ ତମର ଉପଦେଶ ଦେବା ଦରକାର ପଡ଼ିବନି । କାମଟା କେମିତି ହବ ବାବ୍ଲୁ ଜାଣେ । ମୁଁ ତା' ହେଲେ ଯାଉଚି···

କାକଲୀ ॥ ବାହାରୁ ଚାବିଟା ଦେଇଯାଅ ।

ବାବ୍ଲୁ ॥ କାହିଁକି ? ବାବ୍ଲୁ ଗୁଣ୍ଡାର ଘରେ ଚୋର ପଡ଼େନା । ଅନ୍ତତଃ ଏହି ବସ୍ତିରେ ଥିବା ପର୍ଯ୍ୟନ୍ତ ତାର କୌଣସି ଭୟ ନାହିଁ ।

କାକଲୀ ॥ କିନ୍ତୁ ମୋର ତ ଭୟ ଅଛି । ତମେ ନଥିବା ଅବସ୍ଥାରେ ଯଦି ପାପେନ୍ ଏଠିକି ଚାଲିଆସେ ?

ବାବ୍ଲୁ ॥ ପାପେନ୍ ତ ଗଲାଣି; ତା ଛଡ଼ା ସିଏ ତ ଜାଣିନି ତମେ ଏଇଠି ଅଛ ବୋଲି । କିଛି ଯାଏ ଆସେ ନାହିଁ । ମୁଁ ଆସୁଛି ।

[ ବାବ୍ଲୁ ଚାଲିଗଲା ପରେ କାକଲୀ ଦାଣ୍ଡପଟ ଦରଜା ଆଉଜାଇ ଆସିଛି; ତା' ପରେ ଖଣ୍ଡେ ଝାଡ଼ୁଣୀ ଖୋଜି ଘର ଭିତରର ଅଳନ୍ଧୁ ଇତ୍ୟାଦି ସଫା କରୁଛି । ଗୋଟାଏ କାର୍ଟୁନ୍‌ରେ ଅଳିଆ, ମଦ ବୋତଲ, ସିଗାରେଟ ଖୋଳ ଗୋଟେଇ ନେଇ ଅନ୍ୟପଟେ ବାହାରେ ପକେଇ ଦେଇ ଆସିଛି । ]

କାକଲୀ ॥ ସବୁ ପୁଅ ଏମିତି । ଖାଇବା ଠିକ୍ ନ ଥାଏ, ଶୋଇବା ଠିକ୍ ନ ଥାଏ ··ଦିନସାରା ଖରାରେ ବୁଲିବା, ଗୁଲି ମାରିବା, ହୋଟେଲ୍‌ରେ ଚା' ଜଳଖିଆ, ଗୋଟାଏ ପରେ ଗୋଟାଏ ସିଗାରେଟ୍, ରାତି ହେଲେ ଏମିତି ଗୋଟାଏ ଘର ଭିତରକୁ ପଶିଆସି ସେମିତି ଧୂଳି ଉପରେ ଶୋଇପଡ଼ିବା···ଛି···ଛି । ବାହା ହୋଇଗଲା ପରେ କିନ୍ତୁ ସବୁ ଠିକ୍ । ଏମାନଙ୍କୁ ଶାସନ ଦରକାର । ଠିକ୍ ଅଛି । କ'ଣ ନା, ମନେ ମନେ ଗୁଣ୍ଡା !! ଆମେ ସବୁ କରିପାରୁ !! ଆମ ହାତରେ ସବୁ ହେଉଛି !!

[ ଝାଡ଼ୁଣୀଟା ଭିତର ଘରେ ରଖିଦେଇ ଦି'ଟା ଦିଅଁ ଫଟୋ ଆଣି ଖଟ ଉପରେ ବସିଛି । ସେଗୁଡ଼ାକ ପୋଛୁ ପୋଛୁ··· ]

ଆହା ! ବିଚରା ଜଗନ୍ନାଥଙ୍କର କି ଅବସ୍ଥା ! ବିଚରା ଏତେବଡ଼ ପୃଥିବୀରେ ତାଙ୍କର କିଏ ନ ଥିଲା ପରି ଗୋଟାଏ କୋଣରେ ଗଡ଼ୁଥିଲେ ।

( କାନ୍ଥରେ ଝୁଲେଇ ଦେଉଛି )

[ ଠିକ୍ ଏହିକ୍ଷଣବେଳେ ବାହାରପଟ ରାସ୍ତାରେ ଯାଉଥିଲେ ଲକ୍ଷଣ ମହାଜନ । ଚନ୍ଦ୍ରି ଜଙ୍ଗଳା ଦୋକାନୀ । ଦୋକାନ ବନ୍ଦ କରି ସେ ଘରକୁ ଯାଉଛି । ହାତରେ ଗୋଟାଏ ବ୍ୟାଗ୍‌ରେ କିଛି ଫଳ, ବିସ୍କୁଟ ଓ ଗ୍ଲୁ' ପୁଡ଼ିଆ ଇତ୍ୟାଦି । ]

ଲକ୍ଷଣ ॥ ବାବ୍‌ଲୁ ଭାଇ ଘରେ ଅଛି ?

କାକଲୀ ॥ (ଭିତରୁ) ନାହାନ୍ତି ।

ଲକ୍ଷଣ ॥ ( ଆଶ୍ଚର୍ଯ୍ୟ ହୋଇଚ, କାରଣ ସେ ନାରୀ କଣ୍ଠଟିଏ ଆବିଷ୍କାର କରିଚ ) କିଏ ତମେ କିଏ ?

କାକଲୀ ॥ ମୁଁ ? ଗୋଟିଏ ଝିଅ ।

ଲକ୍ଷଣ ॥ ହେଁ ହେଁ ହେଁ···ତା' ତ ମୁଁ ଦେଖୁଚ !

କାକଲୀ ॥ ଆଉ ପଚାରୁଚ ?

ଲକ୍ଷଣ ॥ ପଚାରୁଚ, ତମେ କୁଆଡ଼େ ଆସିଲ ଏଠିକି ?

କାକଲୀ ॥ ତମେ କିଏ ?

ଲକ୍ଷଣ ॥ ମୁଁ ଲକ୍ଷଣ ମହାଜନ । ବାବ୍‌ଲୁ ଭାଇର ନିଜ ଲୋକ । ମୁଁ ବସିବି ଏଠି ? ହେଁ-ହେଁ···

କାକଲୀ ॥ ବସ । ବାବ୍‌ଲୁ ଭାଇ ଏଇନେ ଫେରିବେ ।

ଲକ୍ଷଣ ॥ ବାବ୍‌ଲୁ ଭାଇଟା ବୋକାଟେ । ତମ ଭଳିଆ ଝିଅକୁ ଛାଡ଼ିଦେଇ ଏ ବର୍ଷା ପାଗରେ କୁଆଡ଼େ ଯାଇଚ ?

କାକଲୀ ॥ ଛାଡ଼ିଦେଇ ଯାଆନ୍ତାନି ଯେ, ମତେ କ'ଣ କାମୁଡ଼ି ଖାଇ ଦେଇଥାନ୍ତା ?

ଲକ୍ଷଣ ॥ କାମୁଡ଼ି ଦେଇଥାନ୍ତା !! ହେଁ···ହେଁ···ମତେ କହୁନ···ମତେ କହିଲେ କ'ଣ ମୁଁ ତମକୁ କାମୁଡ଼ି ଦେବିନ, ମୁଣ୍ଡରେ ବସେଇ ରଖିବି ।

କାକଲୀ ॥ (ଲାଲ ଆଖି ଦେଖାଇ) ଚୁପ୍‌ଚାପ୍ ବସ ।

ଲକ୍ଷଣ ॥ ମୋ ଦାଉ ଲୋ' ! ଟିକିଏ ଡେରି ଲଗିବ···ସହଜ କଥା ନୁହେଁ । ହଉ, ତମେ ଆମ ବାବ୍‌ଲୁ ଭାଇ ପାଖରେ ରହିଯାଅ । ନ ହେଲେ ମୋ' ପାଖରେ ରହିଯାଉନ ?

କାକଲୀ ॥ ତମ ପାଖରେ ଅଛି ତ । ତମେ ଭାରି ରସିକିଆ ଲୋକ, ନା···?

ଲକ୍ଷଣ ॥ ହେଁ···ହେଁ···ହେଁ···ମୁଁ ରସିକ ପରି ଜଣା ପଡ଼ୁଚି ?

କାକଲୀ ॥ ହଁ, ଫଟା ରସିକ ପରି ।

**ଃ କୋହଳଏ ଃ**

ଲକ୍ଷଣ ।। ହେଁ…ହେଁ…ହେଁ…ତମ ନାଁ କ'ଣ ?

କାକଳୀ ।। କଢ଼ଲ୍ ପଶ୍ବ ମୋ' ନଁ ଝିଅ । ସେ ବ୍ୟାଗ୍ ଭିତରେ କ'ଣ ରଖିଚ ?

ଲକ୍ଷଣ ।। ପାଉଁରୁଟି ଅଛୁ, ବିସ୍କୁଟ ଅଛୁ, ଜିଲ୍‌ଲି ଅଛୁ, କମଳା ଅଛୁ…ଖାଇବ ?

କାକଳୀ ।। ହୁଁ, ଆଣ । କାହିଁ ବ୍ୟାଗ୍‌ଟା ଦେଖେଁ…

ଲକ୍ଷଣ ।। ପୁରା ବ୍ୟାଗ୍‌ଟା ନେଇଯିବ ? ହେଁ…ହେଁ…ମୁଁ ବାବ୍‌ଲୁ ଭାଇ ପାଇଁ ଆଣିଥିଲି ।

କାକଳୀ ।। ବାବ୍‌ଲୁ ଭାଇ କଏ ମୁଁ କଏ !! ଏକା କଥା ନୁହେଁ ? ତମେ ତ ବାବ୍‌ଲୁର ଭାତୃଭକ୍ତ ଲକ୍ଷ୍ମଣ…

ଲକ୍ଷଣ ।। ହେଁ…ହେଁ…ଖାଉ ନା…ବିସ୍କୁଟଟା ଖାଅ ।

କାକଳୀ ।। ଏ ସ'ଟା ସ୍ନ'ପୁଡ଼ିଆ ଏଇଠି ଥାଉ ।

ଲକ୍ଷଣ ।। ଥାଉ, ତମେ ଆଜି ସବୁଟା ରହିଯିବ ନା ଏଇଠି ?

କାକଳୀ ।। ହଁ, ରହିବା ପାଇଁ ତ ଆସିଚି ।

ଲକ୍ଷଣ ।। (ଖୁସି ହୋଇଗଲା) ମୁଁ ତା'ହେଲେ ଖାଇ ପିଇ ଆସିବି ?

କାକଳୀ ।। କୋଉଠିକି ? ଏଠିକି ଆସିବ ? ବାବ୍‌ଲୁ ଭାଇ ବକେଇବ । ବୁଝିଲ ?

ଲକ୍ଷଣ ।। ତମେ ଠିକ୍ । ହେଁ…ହେଁ…ବାବ୍‌ଲୁ ଭାଇ ପାଇଁ ଫିଟ୍…

କାକଳୀ ।। ଶୁଣ, ଭ୍ରାତୃଭକ୍ତ ଲକ୍ଷ୍ମଣ ମହାଜନେ ! ମୋର କପେ ଗରମ ଚା' ଦରକାର । ବର୍ଷାଟାରେ ଦନ୍ତ ଦନ୍ତ ଛୁଙ୍କ ଆସିଲଣି । ଆଣିଦେଇ ପାରିବ ?

ଲକ୍ଷଣ ।। ହେଁ…ହେଁ…ଇଏ ଗୋଟେ କଥା ? ଏତେ ଦିନ ପରେ ବାବ୍‌ଲୁ ଭାଇ ତମକୁ ବାଛୁଚ; ଚା' କପେ ଆସିବନି ! ଯାଉଚି । ମିନିଟକ ଭିତରେ ଆସିଯିବ । କେଟଲି ଅଛି ?

କାକଳୀ ।। ନା, ଏଠି କିଛି ମଧ୍ୟ ନାହିଁ ।

ଲକ୍ଷଣ ।। ଠିକ୍ ଅଛି, ମୁଁ ଆଣୁଚି ।

[ ଲକ୍ଷଣ ଦୁଆରକୁ ଯିବା ବେଳକୁ ବାହାରୁ ଆସିଚି ବାବ୍‌ଲୁ । କାନ୍ଧରେ ବେଡ଼ିଂ ଓ ହାତରେ ସୁଟ୍‌କେସ୍ । କାକଳୀ ସେଗୁଡ଼ାକ ନେଇ ଭିତର ଘରେ ରଖିଲା । ]

ବାବ୍‌ଲୁ ।। ଓଃ ! ଶଳା, କି ହଇରାଣ !

ଲକ୍ଷଣ ।। ବାବ୍‌ଲୁ ଭାଇ ! ଇଏ କାହାର… ?

ବାବଲୁ ॥ କବେ ଲଖିଆ ' ତୁ' ଏଠି କେତେବେଳୁ ?

ଲକ୍ଷଣ ॥ ମୁଁ ଏଇ ମିନିଟିଏ ହେଲା ଆସିଲି । ତମେ ନ ଥିଲ । ଭାଉଜଙ୍କୁ ଦେଖି ପଳେଇ ଯାଉଥିଲି । ହେଁ···ହେଁ···

ବାବ୍ଲୁ ॥ ଭାଉଜ ? ଭାଉଜ କିଏ ବେ ?

ଲକ୍ଷଣ ॥ କାହିଁକି, ଇଏ··ଇଏ କ'ଣ ଭାଉଜ ହବା ପାଇଁ ଯୋଗ୍ୟ ନୁହନ୍ତି ? ହେଁ · ହେଁ···

ବାବ୍ଲୁ ॥ ଚୁପ୍ ଶଳା ! ଯୋଉଠି ମାଇକିନିଆ ଦେଖିଲୁ ଖାସ୍ ବଳେଇ ଭଳି ଏପଟ ସେପଟ ହବୁ···କେତେବେଳୁ ଆସିଲୁଣି ?

ଲକ୍ଷଣ ॥ (ଭୟରେ) ମୁଁ ଏଇଠିକି ଆସିନି, ହେଁ···ହେଁ···ଆସିଲି ଯେ··· ହେ···ହେଁ···

ବାବ୍ଲୁ ॥ ଦେବି ଶଳାକୁ ଗୋଟେ ଝାବଡ଼···

କାକଳୀ ॥ ତାଙ୍କୁ ମାରନି । ମତେ ବସ୍କୁଟ ଦେଇଚନ୍ତି, ପାଉଁରୁଟି, ଫଳ··· ଏଇଖିଣିକା ଗ୍ଲୁ' ଆଣିବା ପାଇଁ ଦୌଡ଼ିଚନ୍ତି ··

ବାବ୍ଲୁ ॥ ହେଁ···? ଲଗିଯାଇଚନ୍ତି କାମରେ ? ମୁଁ ଜାଣେ ··ଶଳା ଏଇ ଧନ୍ଦା ପାଇଁ ମାସରେ ଦଶଥର ବସ୍ତିରେ ମାଡ଼ ଖାଉଚୁ···ତଥାପି ପକ୍ୱ ଗ୍ଲୁଙ୍କଲନି ?

କାକଳୀ ॥ ସେ ଯାଆନ୍ତୁ ପ୍ରଥମେ ଗ୍ଲୁ' ନେଇଆସିବେ···

ଲକ୍ଷଣ ॥ ହେଁ···ହେଁ···ବାବ୍ଲୁ ଭାଇର ମୁଣ୍ଡଟା ସବୁବେଳେ ଟିକିଏ ଗରମ ଥାଏ । ମୁଁ ଗ୍ଲୁ'ଟା ନେଇ ଆସିଲେ ସବୁ ଠିକ୍ ହୋଇଯିବ ।

( ଯାଉଥିଲା )

ବାବଲ୍ୁ ॥ ଲଖିଆ, ଶୁଣ୍ !

ଲକ୍ଷଣ ॥ (ଡରି ଡରି) କ'ଣ କହୁଚ ?

ବାବ୍ଲୁ ॥ ମୁଁ ନ ଥିଲି ବେଳେ ଶଳା ଏ ଘର ଭିତରକୁ ପଶିଲୁ କାହିଁକି ?

ଲକ୍ଷଣ ॥ ମୁଁ ମୋଟରୁ ପଶିନି, ବାବଲୁ ଭାଇ··ମାନେ···

ବାବ୍ଲୁ ॥ ଆଉ କ'ଣ ତତେ ଝିଅଟା ଘର ଭିତରକୁ ଡାକିଆଣିଲା ?

ଲକ୍ଷଣ ॥ ହଁ, ମାନେ · ଚୁଡ଼ିଗୁଡ଼ାକ ଯେମିତି ଝଣଝଣ ହେଲା ମୁଁ ମନକୁ ମନ ଟିକିଏ···ମାନେ···ମୁଁ ଟିକିଏ ଇଆଡ଼କୁ ଟାଣି ହେଇ ଆସିଗଲି···

ବାବ୍ଲୁ ॥ ପଞ୍ଚଟା ଟଙ୍କା ଦେଲୁ···

ଲକ୍ଷଣ ॥ ଟଙ୍କା ପାଞ୍ଚଟା ? ନଉନ । କ'ଣ କରିବ ? ( ଦେଇଚ )

ବାବ୍ଲୁ ॥ ମଦ ଖାଇବି । ତୋର ଶଳା କ'ଣ ଗଲା ?

ଲକ୍ଷଣ ॥ ମୋ' କଥାଟା ଠିକ୍ ବୁଝିଲନ ! ସେ ଶଳା ସନ୍ତୋଷ ଟେଇଲର୍ ମତେ ପୁଣି ବାଡ଼େଇବ କହୁଛ ।

ବାବୁଲୁ ॥ ବାଡ଼େଇବନ ? ଠିକ୍ ହେଇଚ । ଶଳାର ଆଖି ଫୁଟେଇଦବ ସନ୍ତୋଷ ।

ଲକ୍ଷଣ ॥ ତମେ ଥାଅ ଥାଅ, ବାବୁଲୁ ଭଇ, ସନ୍ତୋଷ ମତେ ବାଡ଼େଇବ ?

ବାବୁଲୁ ॥ ବାଡ଼େଇବନ ? ତୁ ଶଳା ତା' ମାଇପ ପଛରେ କାହିଁକି ଲନ୍ଦ୍ ଫନ୍ଦ୍ ହଉଥିଲୁ ? ସିଏ ଦୋକାନରେ ଥିଲାବେଳେ ତୁ କୁଆଡ଼େ ତା' ଘରେ ପଶି···ହେଇବେ ?

ଲକ୍ଷଣ ॥ ବିଶ୍ୱାସ କର ବାବୁଲୁ ଭାଇ. ତା' ମାଇପ ମତେ ସେଦନ ଘର ଭିତରକୁ ଡାକିଲା ।

ବାବୁଲୁ ॥ ଷ୍ଟୋପ୍ ଶଳା ! ଏଇନେ ଯେମିତ କହୁଥିଲୁ ଏଇ ଝିଅଟା ତତେ ଡାକିଲା ବୋଲି ! ତୁ' ଏମିତ କଥା ବୋଲୁଚୁ, କାହିଁରେ ? ( ତାର ସାର୍ଟ କଲର୍‌କୁ ଧରି ଧଇଥର ଝୁଙ୍କି ଦେଇଚ ) ରସିକ-ଚୂଡ଼ାମଣି ! ତୁ' ରାସ୍ତାରେ ଚାଲିଗଲାବେଳେ ଝିଅ ବୋହୂଙ୍କ ତତେ ଆଖି ମାରି ଘରକୁ ଡାକୁଛନ୍ତି···!! ହୁଁ ଃ !

ଲକ୍ଷଣ ॥ ଆଉ କେବେ ସେମିତ କରିବନ । ଆଜି ଦିନଟା ଛାଡ଼ିଦେ' ବାବୁଲୁ ଭଇ !

ବାବୁଲୁ ॥ କଣ ଶଳା ପ୍ରତିଜ୍ଞା କରୁଚ, ଘଣ୍ଟ ହେଲେ ଧୂଅ କନ୍‌କନ୍ କରୁଚ, କାହିଁରେ ?

ଲକ୍ଷଣ ॥ କାନ ମୋଡ଼ିହଉଚ ବାବୁଲୁ ଭଇ, ଆଉ ଦିନେ ନୁହେ ।

ବାବୁଲୁ ॥ ଯା'···ଭାଗ୍ ଏଠୁ ।

ଲକ୍ଷଣ ॥ ମୋ' କଥାଟା ଠିକେ ବୁଝିବ । ନ ହେଲେ ସେ ଶଳା ସନ୍ଧ୍ୟା···ମତେ ଛୁରି ମାରିଦେବ କହୁଚ ।

ବାବୁଲୁ ॥ ଛୁରି ମାରୁ, ତା'ପରେ ବୁଝିବା !

ଲକ୍ଷଣ ॥ ତମେ ଏମିତ କହୁଚ··· !

ବାବୁଲୁ ॥ ଦେଖ ଲଖିଆ, ମୋର ମୁଡ୍ ଗରମ ଅଛି । ବେଶୀ ଚଢ଼ାନା ମତେ···

ଲକ୍ଷଣ ॥ ହଉ ଭଇ, ମାରନା ମତେ, ମୁଁ ଯାଉଚ । (ଲକ୍ଷଣ ଚାଲିଯାଉଥିଲା; ପୁଣି ପଛକୁ ଫେରିଚ) ବାବୁଲୁ ଭଇ ! ହେଁ···ହେଁ···

ବାବୁଲୁ ॥ କ'ଣ ?

ଲକ୍ଷଣ ॥ (କାକଳୀ ଥିବା ଘରକୁ ଇସାରା କରି) କିଏ ?

ବାବ୍‌ଲୁ ॥ ଯଃ ଯାଃ ଯାଃ···ଏଇନେ ବାହାରୁଥିଲୁ ଯେ ପାଟିରୁ···ତୋର କ'ଣ ଗଲା ବେ ? ଯିଏ ଜଏ ହେଲେ ତୋର ସେଥିରେ କ'ଣ ଅଛି ?

ଲକ୍ଷଣ ॥ ହେଁ···ହେଁ···ହେଁ···ଏମିତି ପଚାରୁଥିଲିନା···

ବାବଲୁ ॥ କାହିଁକି ପଚାରୁଥିଲୁ ? ତୋ'ର କ'ଣ ଦରକାର ?

ଲକ୍ଷଣ ॥ ଯାଗୁଚ କ'ଣ ଯେ ବ ବ୍‌ଲୁ ଭାଇ···! ଏଇସବୁ ଖୁସି ମିଜାଜ କଥାରେ !!

ବାବ୍‌ଲୁ ॥ ଖୁସି ମିଜାଜ୍ , କାହିଁରେ ? ( ଖପ୍ କରି ତାର ସାଟ କଲର୍‌କୁ ଧରି ) ଶଳା ଦେଖିଥିଲୁ କେବେ ? ଏଁ ? ବାବ୍‌ଲୁ ଏଠି ଧନ୍ଦା କରୁଚ, ଭାଙ୍ଗିଚୁ ? କ'ଣ କରି ପାଇଲୁ ମତେ ?

ଲକ୍ଷଣ ॥ ହେଁ···ହେଁ··· (ନେସେଡ଼େଇ ହେଇ) ସେଇଥିପାଇଁ ପଚାରୁଥିଲି । ଏବେ ଆସି ତମର ପାଞ୍ଚ ବର୍ଷ ହେଇଗଲା; କେବେହେଲେ ତ ଦେଖିନି । ଆଜି କେମିତି ବାବ୍‌ଲୁ ଭାଇର ମନ ହେଇଗଲା ?

ବାବଲୁ ॥ ଫେର୍ ଶଳା ସେଇକଥା ? ( ଲକ୍ଷଣ ହାତ ଯୋଡ଼ିଲା, ବାବ୍‌ଲୁ ତାକୁ ଗ୍ଲୁଙ୍କଦେଇଚ, କିଛି ସମୟ ପରେ··· )

ଲକ୍ଷଣ ॥ ପୀତେନ ଦାଦାକୁ ପୋଲିସ୍ ବାନ୍ଧିନେଇଗଲେ ଜାଣିଚ ?

ବାବ୍‌ଲୁ ॥ କେତେବେଳେ ?

ଲକ୍ଷଣ ॥ ଏଇ ଅଧଘଣ୍ଟାଏ ହେଲା । ମୁଁ ଦୋକାନ ବନ୍ଦ କରି ନ ଥିଲି । ଏଇ ଏଣେଆରେ କୋଉଠି କ'ଣ କରୁଥିଲା, ହଠାତ୍ ଲାଲପଗଡ଼ିବାଲେ ଘେରାଉ କରି ବାନ୍ଧି ପକେଇଲେ ।

ବାବ୍‌ଲୁ ॥ ଓ···(ଟିକିଏ ଚିନ୍ତା କରି) ହଉ, ତୁ' ଯା'···

ଲକ୍ଷଣ ॥ ହଉ, ଯାଉଚି । ( ଯାଉଥିଲା, ପୁଣି ପଛକୁ ଫେରି କାକଲୀ ପାଖକୁ ଯାଇ ) ହେଁ···ହେଁ···ଯାଉଚି···କାଲିକି ପୁଣି ଆସିବ··· ହେଁ···ହେଁ···

ବାବ୍‌ଲୁ ॥ ଭାଗ୍ ଶଳା ! ( ଲକ୍ଷଣ ଚାଲିଗଲା )

[ ଲକ୍ଷଣ ଚାଲିଗଲା ପରେ କାକଲୀ ଖୁସି ହେଇ ଘର ଭିତରୁ ବାହାରି ଆସିଚି । ]

କାକଲୀ ॥ ପୀତେନ୍‌କୁ ପୋଲିସ୍ ବାନ୍ଧିନେଇଚି ? ଭଲ ହେଲା ।

ବାବ୍‌ଲୁ ॥ ହୁଁଃ ! ଭଲ ହେଲା ? ଭାଗ୍ ଏଠୁ ? ତୋ ଲାଗି ଶାଳା ମୁଁ ଏଠି ବଦନାମ୍ ହଉଚି ।

କାକଲୀ ॥ ମୁଁ ତମର ବଦ୍‌ନାମ କଲି ?

ବାବ୍‌ଲୁ ॥ ଆଉ କ'ଣ ? ଲକ୍ଷିଆ ମହାଜନ କ'ଣ କହୁଗଲେ ?

କାକଲୀ ॥ ସେଥିପାଇଁ କ'ଣ ମୁଁ ଦାୟୀ ?

ବାବ୍‌ଲୁ ॥ ଆଉ ? କୁଲ ହେଲ, ବେତ୍ତଙ୍ଗ୍ ବୋହଲ···ଧାପେନ୍ ଜାଣିଲେ ତା' ସାଙ୍ଗରେ ଦୁସ୍‌ମନୀ ହବ···ଶେଷକୁ ମୋର ପ୍ରେଷ୍ଟିଜ୍ ଗଲା···

କାକଲୀ ॥ ବେତ୍ତଙ୍ଗ୍‌ଟା ନଜେ କାଇଁକି ବୋହଲ ? କୁଲ୍ କଲନି ?

ବାବ୍‌ଲୁ ॥ ପଇସା କଏ ଦଅନ୍ତା ? ତୋ' ବାବା ?

କାକଲୀ ॥ ମୋ' ବାବା କମଲପୁର ମଶାଣିରେ ଦୁ'ବର୍ଷ ତଳେ ପୋଡ଼ା ହେଇଚନ୍ତି ।

ବାବ୍‌ଲୁ ॥ Get out ! ବାହାର ଯା' ମୋ' ଘରୁ ।

କାକଲୀ ॥ ପୁଣି ମୋ' ପାଖରେ ମୁଣ୍ଡ ଗରମ ହେଇଗଲା, ନା ?

[ ଏକ ଅଦ୍ଭୁତ ଭଙ୍ଗୀରେ ଗୁହିଁଚ ଯେମିତ ମନେ ହେବ ବାବ୍‌ଲୁ ଏକ ଦୁଷ୍ଟ ବାଳକ ଓ କାକଲୀ ମା' ଭଳି ତାକୁ ଶାସନ କରୁଚ; ଅଥଚ ଆଖିରେ ତାର ପ୍ରେମିକାର ସମ୍ବେଦନା ]

ବାବ୍‌ଲୁ ॥ ଏସ୍ତୁ ! ସେମିତ ଗୁହୁଁାନି, କହୁଚ ।

କାକଲୀ ॥ ଆଖି ବୁଜିଦେବି ?

ବାବ୍‌ଲୁ ॥ ଫାଜିଲ୍‌ମି କରନା କହୁଚ । ମୁଡ୍ ଅଫ୍ ହେଇଗଲେ ହାତ ଉଠିଯିବ !

କାକଲୀ ॥ ଅଭଦ୍ର ! ଗୁଣ୍ଡା !

ବାବ୍‌ଲୁ ॥ ତୁ କ'ଣ ? ସତୀ ସାବିତ୍ରୀ ?

କାକଲୀ ॥ (ଦୁଷ୍ଟ ଗୁହାଣି କାଟି) ଅଭଦ୍ର !!

ବାବ୍‌ଲୁ ॥ ଏଁ ! ଡ୍ରାମା କରୁଚ ଏଠି !! ହେରୋଇନ···ସିନେମାକୁ ପଳେଇ ଯାଉନୁ ?

କାକଲୀ ॥ ବେତ୍ତଂ ଆଉ ସୁଟ୍‌କେସ୍ ଦୁ'ଟା ନଷ୍ଟ ଓଜନିଆ ହେଇଥିବ । ସେଇଥିପାଇଁ ମୁଣ୍ଡ ଖରାପ ହେଇଗଲା । କୁଲ କରିଥିଲେ ତ ମୁଁ ଏଠି ପଇସା ଦେଇପକେଇଥା'ନ୍ତି ।

ବାବ୍ଲୁ ॥ ଦଶ ପଇସା ଦେଖଉଚ ଝୋଙ୍କା !! ମୁଁ ଯେମିତ ଏଠି ଶଳା ଗୋଟେ ଭିକାରି କୁଆ; ବସ୍ତି ଭିତରେ ଅଛି ! ଆସିଗଲେ ଅଫିସରଆଣୀ ମାଷ୍ଟର—ପଇସା ଦେବେ ଯାଙ୍କ ବେଡ଼ଙ୍ଗ୍ ବୋହିଲ୍ ବୋଲି ! ଶାଳୀ ଏଇ ଦୁନିଆ ହାରାମ୍‌ଜାଦୀ···ଯା’ର ଉପକାର କରିବ ସିଏ ପୁଣି ଓଲଟି······

କାକଳୀ ॥ କ’ଣ ଗୋଟେ ଶାଳୀ ଶାଳୀ ହଉଚ ମ ? ଘର ଭିତରେ ଗୋଟାଏ ଭଦ୍ରମହିଳା ଠିଆ ହେଇଚ, ସେ କଥା ଖିଆଲ୍ ପଡ଼ୁନି କି ?

ବାବ୍ଲୁ ॥ ଏଁ ! ‘ଭଦ୍ର’ ଆଉ ‘ମହିଳା’—ଘାଟପନ୍ ଦାସ ସାଙ୍ଗରେ ସିଏ ପେଟରେମ୍ କରୁଥିଲ ସେଇଟା ପୁଣି ଗୋଟେ ଭଦ୍ରମହିଳା ! ଶାଳୀ ଗୁଣ୍ଡା, ଖୁନୀ, ଡକେଇତ ସଙ୍ଗରେ ପେଟରେମ୍···ଛତ୍ରୁ ଫୁଟୁଥିଲ ଝିଅର···ଏଇନା ସବୁ ଗୁଡ଼ିଗଲା ରଙ୍ଗ । (ଟିକିଏ ପରେ) ମୋର ଘରେ ରହି ମୋର ଉପରେ ମାଲିକାନା ? (ହାତ ଉଠେଇ) ଦେବି, ଏକବାରେ ଗାଲଟା ଫଟେଇଦେବି !

କାକଳୀ ॥ ( ହିଂସ୍ର ସ୍ୱରରେ ) କ’ଣ କହିଲ ? ଘରେ ଟିକିଏ ଆଶ୍ରୟ ଦେଇଚ ବୋଲି ତମେ ମତେ ବାଡ଼େଇବ ? କାହିଁ, ବାଡ଼େଇଲ ଦେଖି !!

[ କାକଳୀର ଏଇ ପ୍ରକାର ବ୍ୟବହାରରେ ବାବ୍ଲୁ ହଠାତ୍ ସ୍ତମ୍ଭୀଭୂତ ହୋଇ ରହିଯାଇଚ । ଆଗରୁ ଏ ପ୍ରକାର ବ୍ୟବହାର କେବେ ସେ ପାଇନି ]

ବାବ୍ଲୁ ॥ ହୁଁ, ବାବ୍ଲୁ ଗୁଣ୍ଡାକୁ ଚହ୍ନି ନାହୁଁ ଏପର୍ଯ୍ୟନ୍ତ ! ପଢ଼ିଆସ ଦେଖିବୁ ମୋର !! ମନେରଖ, ଏଠି ବାବ୍ଲୁର ନାଁ ଶୁଣିଲେ ଗର୍ଭିଣୀ ଗାଈ ବାଛୁରି ଗୁଡ଼ିଦିଏ ।

କାକଳୀ ॥ ତମେ ବି କାକଳୀ ମିଶ୍ରର ନାଁ ଶୁଣିନା । ମୋ’ ନାଁ ଶୁଣିଲେ ତମ ସହରର ଝୋକାମାନଙ୍କର ପାଟି ଅଠା ହେଇଯାଏ···ଖାଲି ପାଣି ପିଇବାକୁ ଇଚ୍ଛା ହୁଏ !

ବାବ୍ଲୁ ॥ ସେଇଥିପାଇଁ ଘାପେନ୍ ଡକେଇତକୁ ପ୍ରେମ କରି ଏଇ ଅଖ୍ୟାତ ବସ୍ତିରେ ବାବ୍ଲୁ ଗୁଣ୍ଡା ଘରେ ଆଶ୍ରୟ ନେଇଚୁ ? Get out ! ବାହାରି ଯା’ ଏଠୁ !

କାକଳୀ ॥ ନା, ମୁଁ ଏଇଠି ରହିବି । ଜବରଦସ୍ତ ଏଇ ଘରେ ରହିବି । ଦେଖିବି କୋଉ ଗୁଣ୍ଡା ମୋର କ’ଣ କରୁଚି ।

ବାବ୍‌ଲୁ ॥ ଶାଳା ବଦ୍‌ମାସ୍ ଟୋକା ! ଚରିତ୍ରହୀନା !!

କାକଲୀ ॥ କିଏ ସେ ? କାହା ଆଗରେ ତମେ ଏଇ କଥାଗୁଡ଼ା କହୁଚ ? ଚରିତ୍ରହୀନା ? କାକଲୀ ମିଶ୍ର ଏତେ ସହଜରେ ଧରା ଦିଏନା । ତମକୁ ଲାଗୁଚି, ତମର ଚଉଡ଼ା ଗୁଣ୍ଡ ଆଉ ମୋଟା ମୋଟା ବାହୁ ଦେଖି ଦୁର୍ବ୍ବାମା ହୋଇ ପଳେଇ ଆସିଚି ଏଠିକି ? ସେମିତି ପରିସ୍ଥିତି ନ ଆସେ ନା ମୁଁ ତମର ଏଇ ଅଳନ୍ଧୁ, ଅପରଫା, ଚିଟିପିଟି ବସାରେ ପାଦ ନ ଦିଏ ।

ବାବ୍‌ଲୁ ॥ କିଏ କହୁଥିଲା ଏଠିକି ଆସିବାପାଇଁ ? କିଏ ଡାକୁଥିଲା କେ ତତେ ? ମୁଁ ପାପେନ୍ ମଡ଼ରର୍ ହୋଇନା ଯେ ଛୁଟ ସାର୍ଟ ପିନ୍ଧି, ସେଣ୍ଟ୍ ଲଗେଇ ତତେ ଫୁଟ୍‌କି ମାରି ମୋର ବସାଘରକୁ ଡ଼କେଇଚି !! ଆମେ ବି ଶାଳା ଲେବେଡ଼ା ନୋହୁଁ । ଜାନ୍ ଗୁଲିଯିବ ପଛେ କୋଉ ଟୋକୀ ପଛରେ ଗୋଡ଼େଇ ଆମେ ଇଜ୍ଜତ ହରେଇନୁ ! କ. ଏସ. କଲେଜର ପ୍ରେସିଡେଣ୍ଟ୍ ଥିଲି···ଶାଳା ହଜାର ହଜାର ଟୋକୀ ଆମ ପଛରେ ପଇଁତରା ମାରୁଥିଲେ·· ବାବ୍‌ଲୁ କାସୀକୋ ଥୋଡ଼ କେୟାର୍ କର୍‌ତା ହେ ? ମାର୍ ଗୁଲି ଶାଳା··· !!

କାକଲୀ ॥ କେୟାର୍ କରିବନି ? ଟୋକୀ ଦେଖିନ କାନ୍ଦେଇଁରେ !

ବାବ୍‌ଲୁ ॥ ( ସିଗାରେଟ୍ ପିଇ ) ଭରି ଦେଖେଇଲୁ ବାଲ···ହୁଁ ଃ !!

କାକଲୀ ॥ ହୁଁଃ !! ଏଇଟା ପୁଣି ଗୋଟାଏ ଘର ! ଘୁଷୁରି ମଧ୍ୟ ରହିବନି ଏଠି ! ଅନ୍ଧାର ଗଳିରେ ଗୋଟାଏ ଝୋପଡ଼ି । ସେଠି ଟିକିଏ ଆଲୁଅ ଦେଇଚନ୍ତି ବୋଲି ନାଲି ଆଖି ଦେଖେଇବେ ! ଗୁରିଆଡ଼େ ଅନ୍ଧାର; ମଣିଷକୁ ମାରିଦେଲେ ବି ଏଠି ଖବର ମିଳିବ ନାହିଁ । ଅପନ୍ତରା ବସ୍ତି ··ପଲ ପଲ ଘୁଷୁରି···ଗଣ୍ଡାଗଣ୍ଡା ଲଙ୍ଗଳା ଅସ୍ୱାସ୍ଥ୍ୟକର ରୋଗଣା ଛୁଆ···କୌଣସି ବନ୍ତାଖୁଣ୍ଟରେ ଆଲୁଅ ନାହିଁ···

ବାବ୍‌ଲୁ ॥ ଆଲୁଅ ଏ ଗଳିରେ ଜଳେନା । ଆରେ, ଜଳେନା କ'ଣ···ଜଳିବାକୁ ଦିଆଯାଏନା । ବଲ୍‌ବ ଜଳିଲେ ଟେକା ମାରି ଭାଙ୍ଗି ଦିଆଯିବ···

କାକଲୀ ॥ କାରଣ ଆଲୁଅରେ ସିଧା ହୋଇ ଗୁଲିବା ସାହସ ତମର ନାହିଁ । ତମେ ଅନେକ ଦିନରୁ ସେ ସାହସ ହରେଇଦେଇଚ । ତମେ କ'ଣ ଭାବୁଚ ଅନ୍ଧାର ଭିତରେ ଚାଲିବାଟା ଗୋଟାଏ ଫେସନ୍ ?

ବାବ୍‌ଲୁ ॥ ( ବେପରୁଆ ଭାବରେ ଗାଇଲା ) ସହରୌଁକା ଗଲିୟୌଁ ମେ ଜବ୍ ଅନ୍ଧେରା ହୋତା ହେ···( ତା'ପରେ ସେଇ ସ୍ୱରଟାକୁ ହୁଇସିଲ୍‌ରେ ଗାଉଛି ) ତାପରେ··· ?

ଃ ସନ୍ତେଇଣ ଃ

କାକଳୀ ॥ ମୁଁ ଏଠି କୋଉ ଛତରଙ୍କ ଗୀତ ଶୁଣିବା ପାଇଁ ଆସିନ । ରାତ ଆସି ଏଗାରଟା ବାଜିଲାଣି । କ'ଣ ଖାଇବ କୁହ । ଯଦି ଖାଇବାକୁ ଦେଇ ନ ପାରୁଚ ସଫାସଫା ମନା କରିଦିଅ । ଗିଲାସେ ପାଣି ପିଇ ଶୋଇପଡ଼ିବ ।

ବାବ୍‌ଲୁ ॥ ପାଣି ପିଇ ଶୋଇଯା'···ମୁଁ କିଛି ଖାଇବା ପାଇଁ ଦେଇ ପାରିବିନି । ଶାଳା ବଙ୍କାଗୁଡ଼ା ଚଢ଼ିଆସିବୁ ଉଡ଼ିକରି ଏଠିକି ଆସିବେ ଯେ ମୁଁ ତାଙ୍କ ପାଇଁ ଏଠି ହୋଟେଲ୍ ଖୋଲି ବସିଥିବି, ନାଇଁ ?

କାକଳୀ ॥ ଆମେ ବି ଭିକାରି ହେଇନୁ । ଭୋକରେ ରାତିଟେ ରହିପାରିବୁ । ପାଣି କୋଉଠି ଅଛି ?

ବାବ୍‌ଲୁ ॥ ଏଠି ଘର ଭିତରେ ମୁନିସିପାଲିଟି କଳ ନାଇଁ । ଇଚ୍ଛା ହେଲେ ବାହାରୁ ହ୍ୟାବସ୍ କରି ପାଣି ଆଣ ।

କାକଳୀ ॥ ହ୍ୟାବସ୍ ? ହ୍ୟାବସ୍ କ'ଣ ?

ବାବ୍‌ଲୁ ॥ ହ୍ୟାବସ୍···ହ୍ୟାବସ୍ ମାନେ ଜାଣିନା ? ନଳକୂପ···Tube-well ହ୍ୟାବସ୍ ( ଅଭିନୟ କରି ) କରି ପାଣି କଢ଼ାଯାଏ ।

କାକଳୀ ॥ ଅଭଦ୍ର ! ଝିଅମାନଙ୍କ ସଙ୍ଗେ କେମିତି କଥାବାର୍ତ୍ତା କରିବାକୁ ହୁଏ ଜାଣିନା ?

ବାବ୍‌ଲୁ ॥ ଆମେ ମାଇଚିଆ ନୋହୁଁ । କୋଉ ଝିଅଙ୍କ ସଙ୍ଗେ ଆମେ କଥାବାର୍ତ୍ତା କରୁନା ।

କାକଳୀ ॥ ମୋ' ଆଗରେ ଆଉ ଭଦ୍ରଲୋକୀ ଦେଖାଅନି । ତମେ କୋଉ ଷ୍ଟାଣ୍ଡାର୍ଡ଼ର ଲୋକ ମୁଁ ବେଶ୍ ବୁଝିସାରିଲିଣି ।

ବାବ୍‌ଲୁ ॥ କ'ଣ ବୁଝିଚୁ ?

କାକଳୀ ॥ ସବୁ ବୁଝିଚି ।

ବାବ୍‌ଲୁ ॥ ଜାଣିଲେ ମୋର କ'ଣଟେ ବଙ୍କା କରି ପକେଇବୁ ? ହମ୍ କାହାକୋ କେୟାର ନେହିଁ କର୍‌ତା ହେ । ଯୋଉଦିନଠୁ ଗୁଣ୍ଡେଇଚି, ସବୁ ଗୁଣ୍ଡ-ଦେଇଚି···ଶାଳା ବାପ୍ କୋ' ଭି ହମ୍ କେୟାର୍ ନହିଁ କର୍‌ତା ହେ । କଲେଜ ଇଲେକ୍‌ସନ୍ ହେଇଚି···ତିନି ତିନିଟା ବେଷ୍ଟ ଟେନ୍ ପିଲାଙ୍କୁ ହରେଇ ଛ'ଶହ ଭୋଟ୍‌ରେ ଲିଡ୍ କରି ପ୍ରେସିଡେଣ୍ଟ୍ ହେଇଚି···ତିନିଟା ଅଲ୍ ଓଡ଼ିଶା ଷ୍ଟ୍ରାଇକ୍‌ରେ ମୋର ହାତ ଅଛି । ସେଇ କଲେଜ ବେଳରେ ମୋ' ନାଁରେ ସାତ ସାତଟା ପୋଲିସ୍ କେସ୍···ମାଲ୍‌ଭର୍ତ୍ତି ଟ୍ରକ୍ ଉପରକୁ ଫୋପାଡ଼ି ଦିଆଯାଇଚି ଆମ-

ମାନଙ୍କ···ପୋଲିସ୍‌ଭ୍ୟାନ୍ ଭିତରକୁ ଅଖାବସ୍ତା ଭଳି ଫୋପଡ଼ା ହୋଇ ଜେଲ୍‌ର ଅନ୍ଧାରିଆ ସେଲ୍ ଭିତରେ ଦୁଇମାସ ଲେଖା ସଢ଼ିଚୁଁ···ତାହାପାଇଁ ? କୋଉ ସମାଜ ପାଇଁ ?? ପ୍ରତିଦାନରେ ଏ ସମାଜ ଆମକୁ ଦେଇଚି କ'ଣ ? ନ୍ୟାୟ ପାଇଁ ଫାଇଟ୍ କରି କରି ଆମେ ବେଲ୍‌ଟ୍ ମାଡ଼ ଖାଇଚୁଁ···( ସାର୍ଟ ଖୋଲି ) ଏଇ ପିଠିରେ ଏ ପର୍ଯ୍ୟନ୍ତ ସେ ଦାଗ ଲିଭିନି । ତା'ପରେ ଦେଖିଚି···କିଚ୍ଛୁ ନାହିଁ··· ସବୁ କେବଳ ମୋର ମନର ଗୋଟାଏ ଗୋଟାଏ ଝ୍ରିଙ୍କ୍···ଆଉ କିଚ୍ଛୁ ନୁହେଁ । ଭାବିଥିଲି, ଜେଲ୍‌ରୁ ଆସିଲା ପରେ ମତେ ସମାଜରେ ଖାତିର୍ ମିଳିବ···ଯେଉଁ ସମ୍ମାନ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମିଳି-ଥିଲା ··ଆମେ ବି ସରକାରୀ ଦୁର୍ନୀତି ବିରୁଦ୍ଧରେ ସ୍ଲୋଗାନ୍ ଦେଇଚୁଁ··· ପଚ୍ଚସଢ଼ା ଆଇନ୍ ଆଉ ସମାଜ ବ୍ୟବସ୍ଥାକୁ ବଦଳେଇ ଦେବାର ଡାକରା···କିଏ ଶୁଣିଲା ? ତାରାପଦବାବୁ ଭଳି ଯୋଉମାନେ ଆମକୁ ଗୁଣ୍ଡା ବୋଲି କହୁଥିଲେ ସେମାନେ ଏ ସମାଜର ବଡ଼ପଣ୍ଡା···ସେମାନଙ୍କ ମୁହଁରେ ପରଖା କରିଦେଇଚୁଁ ଆମେ··· ସେମାନେ ବି ଆମକୁ ଅଯୋଗ୍ୟ କହି ଠେଲି ଦେଇଚନ୍ତି ଏଇ ଅପନ୍ତରା ବସ୍ତିର ଅନ୍ଧାର ଭିତରକୁ···ଆଇ ଡୋଣ୍ଟ୍ କେୟାର୍ । କିନ୍ତୁ କାକଳୀ, ମନେରଖିଥିବୁ, ଆଜି ଯୋଉ ତାରାପଦ—ହେମନ୍ତ ମହାପାତ୍ର ମାନେ ଦେଶର ଏଇ ପରିବର୍ତ୍ତିତ ଅବସ୍ଥାରେ ଇଲେକସନ ଲଢ଼ୁଛନ୍ତି, ସେଇ ପରିବର୍ତ୍ତନର ମୂଳଦୁଆ ଦେଇଚି ଆଜିର ବାବୁଲୁଗୁଣ୍ଡା । ତମେ ଯୋଉମାନେ ଭଦ୍ରଲୋକ ଭଦ୍ରମହିଳା କହୁଚ ଦେଶର ଆକାଶରେ ନୂଆ ସୂର୍ଯ୍ୟ ଉଠିଚି ବୋଲି···ହୁଁଃ··· ସେଇ ସୂର୍ଯ୍ୟକୁ ଅନ୍ଧାରିଆ ପାହାଡ଼ର ଉପତ୍ୟକା ଭିତରୁ ଟେକି ଆଣୁ ଆଣୁ ମୋର ହାତ ପୋଡ଼ିଯାଇଛି···( ନିଜ ହାତକୁ ନିଜେ ଦେଖି ଓ ଦେଖାଇ ) ଦେଖଚୁ··· ? ଏଇ ହାତର ଭାଗ୍ୟରେଖା ଗୁଡ଼ାକ ଛୁଞ୍ଚି ମାଡ଼ରେ ଓଲଟ ପାଲଟ···ତମ ନୂଆ ସୂର୍ଯ୍ୟର ନିଆଁରେ ପୋଡ଼ିହୋଇ କେମିତି କଳା ଅଙ୍ଗାର ହୋଇଯାଇଛି··· ?? ( ତା'ପରେ କ୍ଳାନ୍ତ ହୋଇ ବସି ପଡ଼ିଚି ) ଓଃ !!

କାକଳୀ ।। ମୁଁ ଜାଣେ ତମ ଭିତରେ ଏମିତି ଅନେକ ଅଧାଫୁଟା ବାରୁଦ ଜମା ହୋଇ ରହିଚି ।

ବାବ୍‌ଲୁ ।। କେଜାଣି ଶଳା, କ'ଣ ଅଛି କ'ଣ ନାହିଁ ଭାବିବା ପାଇଁ ମୁଣ୍ଡ କାମ କରୁନି ।

।। ଅଣତିରିଶ ।।

କାକଳୀ ॥ ସେଗୁଡ଼ା ଖୁଜିବା ଦରକାର ନାହିଁ । ଅନେକ ରାତି ହେଲାଣି ; ଖାଇବ କ'ଣ ?

ବାବ୍‌ଲୁ ॥ ତୋ' ପାଇଁ ଲଖିଆ ପାଉଁରୁଟି ଆଣି ଦେଇଚି; ସେଇତକ ଚଳିବ ?

କାକଳୀ ॥ ତମ ପାଇଁ ?

ବାବ୍‌ଲୁ ॥ ମୋର ଖାଇବା କିଛି ଠିକଣା ନାହିଁ । ତଥାପି ବାବ୍‌ଲୁ ଗୁଣ୍ଡାର ଖାଇବା ଅଭାବ ନାହିଁ । ଯୋଉଠିକି ଯିବି ସିଏ ଖାଇବାକୁ ଦବ ।

କାକଳୀ ॥ ଏଇଟା ଗୋଟାଏ ଘର । ମୁଁ ଜଣେ ନାରୀ । ତମେ ମୋର ଅନେକ ସାହାଯ୍ୟ କରିଚ । ତେଣୁ ମୁଁ ଯେତେବେଳେ ଅଛି ତମର ଖାଇବା କଥା ବୁଝିଦେଇପାରେ । କିଛି ଚାଉଳ, ପରିବା, ଅଟା ନେଇ-ଆସିଲେ ମୁଁ ଗ୍ରେଷେଇ କରିଦେଇପାରିବି । ଆଣିବ ?

ବାବ୍‌ଲୁ ॥ ମୋ ପାଇଁ ତୋର ବ୍ୟସ୍ତ ହେବା ପ୍ରୟୋଜନ ନାହିଁ ।

କାକଳୀ ॥ ତଥାପି, ଏଇଟା ଗୋଟାଏ ଘର ।

ବାବ୍‌ଲୁ ॥ ଘର ? ଘର ସହିତ ମୋ'ର ଅନେକ ଦିନରୁ ସମ୍ପର୍କ କଟିଯାଇଚି । ତେବେ ନିହାତି ଯଦି ତୋର ଗ୍ରେଷେଇ କରିବା କଥା···ସେଇ ବ୍ୟାଗ୍ ଭିତରେ କିଛି ଗୁଡ଼ିଲ ଅଛି । କାନ୍ଥରେ ଯୋଉ ବୋତଲଟା ଝୁଲୁଚି ସେଥିରେ ତେଲ କିଛିଟା ଅଛି । ତୁ ଚୁଲ୍ଲୀ ଜଳେଇବା ଆରମ୍ଭ କର । ମୁଁ କିଛି ପରିବା ନେଇ ଆସୁଚି···

[ ବାବ୍‌ଲୁ ଚାଲିଯାଇଚି ବାହାରକୁ । କାକଳୀ ପଛପଟେ କିଛି କାଠ ଲଗେଇ ଚୁଲ୍ଲୀ ଲଗେଇବା ବ୍ୟବସ୍ଥା କରିଚି । ଇତିମଧ୍ୟରେ ବାହାରୁ ଆସିଚି ସନ୍ତୋଷ । ମଦ ପିଇ ଚୁର ହୋଇ ଆସିଚି । ପାଦ ଟଳମଳ । ]

ସନ୍ତୋଷ ॥ ଗୁରୁ ! ଗୁରୁ ଘରେ ଅଛ ?

କାକଳୀ ॥ (ଶୁଣିଚି, ସତର୍କ ହୋଇଯାଇଚି) କିଏ ?

ସନ୍ତୋଷ ॥ (ଭିତରକୁ ପଶି) ହେଇଟି ଗୁରୁ ! ଶଳା ଗୋଟେ ବୋତଲରେ ଘୁରି ଡାଉନ୍ ? ଏଁ ? ମା' କସମ୍···!!

କାକଳୀ ॥ (ଦେଖାଦେଇ) କାହାକୁ ଖୋଜୁଛନ୍ତି ? ବାବ୍‌ଲୁକୁ ?

ସନ୍ତୋଷ ॥ ( ହଠାତ୍ ବାବ୍‌ଲୁ ବଦଳରେ ଗୋଟାଏ ଝିଅକୁ ଦେଖି ନିଜ ଆଖିକୁ ବିଶ୍ୱାସ କରିପାରିନି । ଆଖି ମଳି ପୁଣି ପରୀକ୍ଷା କରିଚି ) ଏଁ !!

କାକଳୀ ॥ ବାବ୍‌ଲୁ ବଜାରକୁ ଯାଇଚି ।

ସତ୍ତାଶ ॥ ଏଇଟା ବାବ୍‌ଲୁ ଘର ତ ? ମା' କସମ୍ ?

କାକଳୀ ॥ ତମେ ଏଠିକି ନିଶା ଖାଇ ଆସିଚ କି ?

ସତ୍ତାଶ ॥ ନିଶା ଖାଇଥିଲି ଦୁ'ଘଣ୍ଟା ତଳେ । ଗ୍ଲୁଡ଼ିଗଲାଣି । ପୁଣି ଥରେ ଖାଇବାକୁ ଆସିଚି ।

କାକଳୀ ॥ ମାନେ ?

ସତ୍ତାଶ ॥ ମାନେ-ଫାନେ କିଛି ନାହିଁ । ତମେ କିଏ ?

କାକଳୀ ॥ ବାଃ ! ବଢ଼ିଆ ଲୋକ ତ ତମେ ? ମୋ' ଘରକୁ ଆସି ମୋ' ପରିଚୟ ମାଗୁଚ ?

ସତ୍ତାଶ ॥ ତମ ଘର, ମାନେ ? ଏଇଟା କେବେଠୁ ତମ ଘର ହେଲା ?

କାକଳୀ ॥ ଯେହେତୁ ବର୍ତ୍ତମାନ ମୁଁ ଏ ଘରେ ଅଛି !

ସତ୍ତାଶ ॥ ଏସ୍ ମାଡାମ୍ ? ସଫା ସଫା କହୁବ ନା ନାହିଁ ତମେ କିଏ ?

କାକଳୀ ॥ ତମେ କୁହ, ତମେ କିଏ ?

ସତ୍ତାଶ ॥ ସତ୍ତାଶ ଟେଇଲର୍ । ମାର୍କେଟ ଛକର କପଡ଼ାବାଲା । ଫିଟ୍‌ଫାଟ୍ ଟେଇଲର୍ସ୍ । କଇଁଚ ଧରିଲେ ଦିନକୁ ଦଶ ଟଙ୍କା ମିଳେ । ରାତିରେ ସେତିକ ମଦ ପିଇ ଦିଏ···ଏବଂ କାଲି ମାଇପଠୁ ମାଡ଼ ଖାଏ···

କାକଳୀ ॥ ( ପ୍ରଶଂସା କଲା ଭଙ୍ଗୀରେ ) ବାଃ ! ଖୁବ୍ ବଢ଼ିଆ ତ ? ବେଶ୍ ଖୋଲାଖୋଲି ନିଜର ଦୁର୍ବଳତାଗୁଡ଼ିକ ଜଣେଇଦଉଚ ? ଏ ବସ୍ତିରେ କ'ଣ ସମସ୍ତେ ଖୋଲାଖୋଲି ?

ସତ୍ତାଶ ॥ ନଙ୍ଗଳା, ମା' କସମ୍ !! ଆମର ଭିତର ବାହାର ବୋଲି କିଛି ନାହିଁ । ଭିତର ଯାହା, ବାହାର ତାହା···

କାକଳୀ ॥ ମୁଁ ଏମିତି ଗୋଟାଏ ପରିବେଶ ଅନେକ ଆଗରୁ ଖୋଜୁଥିଲି ।

ସତ୍ତାଶ ॥ ମୋ' ବିଷୟରେ ଆଉ ଶୁଣିବ ନା ନିଜ ପରିଚୟଟା···

କାକଳୀ ॥ ଆଉ କିଛି ଶୁଣାଅ !

ସତ୍ତାଶ ॥ ନଇଁ ରାତି ହେଲେ ମୋ' ସ୍ତ୍ରୀ ମତେ ପିଟେ । କାରଣ ମତେ ମଦୁଆ ବୋଲି ସିଏ ଘୃଣା କରେ । ମୁଁ ମଧ୍ୟ ତାକୁ କର୍ଧୁମ୍ ପିଟେ··· କାରଣ ମୁଁ ନ ଥିଲା ବେଳେ ସିଏ ଅନ୍ୟମାନଙ୍କ ସାଙ୍ଗରେ ଲଟର୍ ପଟର୍ ହୁଏ । ହେଲେ ମତେ ସମସ୍ତେ ଏ ବସ୍ତିରେ ଡରନ୍ତି ମୁଁ ବାବ୍‌ଲୁର୍ ସାଙ୍ଗ ବୋଲି । ଆମେ ପିଲାଦିନର ସାଙ୍ଗ । ଏକା ସ୍କୁଲରେ ପଢ଼ୁଥିଲୁଁ । ବାବ୍‌ଲୁ ବଡ଼ଘରର ପିଲା—ସିଏ ପାଠ ପଢ଼ିଲା···ମୁଁ ମଦ ପିଇ ଟେଇଲର୍ ହେଇଚି । ମା' କସମ୍, ଏଇଟା ଆମର ମଦପିଆ ଆଖଡ଼ା ଘର ।

॥ ଏକବିଂଶ ॥

କାକଳୀ ॥ ଆଜିଠୁ ଏଇଟା ଖାଲି ଘର । ଆଖଡ଼ାଘର ନୁହେଁ ।

ସଙ୍ଗୀତ ॥ ବାବୁଲୁର ତମେ କ'ଣ ହୁଅ ?

କାକଳୀ ॥ କିଛି ନୁହେଁ ।

ସଙ୍ଗୀତ ॥ ମା' କସମ୍ ? କିଛି କେମିତି ନୁହ ? ଏଠିକି ଆସିଲ କେମିତି ତା'ହେଲେ ?

କାକଳୀ ॥ ତମେ ଯେମିତି କାହାକୁ ନ ପଚାରି ଏ ଘରକୁ ପଶିଆସିଲ, ସେମିତି ।

ସଙ୍ଗୀତ ॥ ଓହୋ ! ବୁଝିଗଲି...

କାକଳୀ ॥ କ'ଣ ବୁଝିଗଲ ? ମୁଁ ବଜାରରେ ଚେହେରା ଦେଖେଇ ମୁହଁରେ ପାଉଡର ଆଉ ଆଖିରେ କଜଳ ମାଖି ବୁଲୁଥିଲି ଆଉ ବାବୁଲୁ ଗୁଣ୍ଡା ମତେ ଆଖି ଠାରି ଇସାରା କରି ଏଠିକି ନେଇଆସିଲା । ଏଯା ? ନା ତାର ଚେହେରା, ଗୁଣ୍ଡାମି ଆଉ ବୀରତ୍ୱ ଦେଖି ମୁଁ ରାଜକୁମାରୀ ଭ.' ପ୍ରେମରେ ପଡ଼ି ଉଦ୍‌ଭ୍ରାନ୍ତ ହୋଇ ଏଇ ବସ୍ତିକୁ ଆସିଗଲି ?

ସଙ୍ଗୀତ ॥ ଦୋଉଟା ହେଲେ ନୁହେଁ ।

କାକଳୀ ॥ ନା ।

ସଙ୍ଗୀତ ॥ ବାବୁଲୁ ସ୍ତ୍ରୀ ଭିତରେ ତା'ହେଲେ ବାହା ହେଇଗଲ ?

କାକଳୀ ॥ କାହିଁକି ? ବାହାହେବାଟା କ'ଣ ନିହାତି ଦରକାର ?

ସଙ୍ଗୀତ ॥ ନ ହେଲେ ଏମିତି ମୁହଁ ଟାଣ କରି କଥା ବାହାରନ୍ତା ନାହିଁ ।

କାକଳୀ ॥ କାହିଁକି ? ବାହା ନ ହୋଇ ପୁଅଟେ ଆଉ ଝିଅଟେ ଗୋଟାଏ ଘରେ ରହିପାରିବେ ନାହିଁ ବୋଲି କୋଉ ପାଠରେ ଲେଖା ହେଇଚି ?

ସଙ୍ଗୀତ ॥ ମା' କସମ୍ ! ତମକୁ ଦୂରରୁ ଜୁହାର । ମୁଁ ଏଠୁ ଯାଉଚି ।

( ଯିବାକୁ ବାହାରୁଥିଲା )

କାକଳୀ ॥ ତମେ ବାବୁଲୁର ବନ୍ଧୁ । ବସ ସେଇଠି । ସେଇ ଖଟ ଉପରେ ।

ସଙ୍ଗୀତ ॥ ମତେ...ମାନେ...ମୁଁ...ମୁଁ ବସିବି ଏଇଠି ?

କାକଳୀ ॥ ହଁ, ତମକୁ କହୁଚି ।

ସଙ୍ଗୀତ ॥ ଗୁରୁ ଆସିଲେ...ମାନେ ବାବୁଲୁ ଆସିଲେ କହିଦେବ ସଙ୍ଗୀତ ଟେଇଲର ଆସିଥିଲା ।

କାକଳୀ ॥ ବସ, ତମକୁ ଗୋଟାଏ କଥା ପଚାରିବି ।

ସଙ୍ଗୀତ ॥ କ'ଣ ?

॥ ବାଧଣ ॥

କାକଳୀ ॥ ଦେଖ, ମୁଁ ବିପଦରେ ପଡ଼ିଯାଇଛି । ଅଗତ୍ୟା ମତେ ବାବ୍‌ଲୁ ପାଖରେ ଆଶ୍ରୟ ନେବାକୁ ପଡ଼ୁଛି । ବାବ୍‌ଲୁର ସାଙ୍ଗ ଭାବରେ ତମେ ତ ତାକୁ ଜାଣିଥିବ ! କହିପାରିବ, ବାବ୍‌ଲୁ କେମିତିକା ଲୋକ ?

ସନ୍ତୋଷ ॥ ମା' କସମ୍, ମୁଁ ଗୁରୁ ବିଷୟରେ ସେମିତି କିଛି କହିପାରିବିନି ।

କାକଳୀ ॥ ମୁଁ ପଚାରୁଛି ବାବ୍‌ଲୁର ଚରିତ୍ର କେମିତି ?

ସନ୍ତୋଷ ॥ ମୋ ମୁଣ୍ଡରେ କିଛି ପଶୁନି ଏଗୁଡ଼ାକ । ମା' କସମ୍, ମୁଁ ଗୋଟେ ମୂର୍ଖ ଟେଇଲର୍...ମଦୁଆ । ବର୍ତ୍ତମାନ ଖୁବ୍ ପିଉଛି ।

କାକଳୀ ॥ ବାବଲୁର ଚରିତ୍ର ବନ୍ଧୁ ଭାବରେ ତମେ କେମିତି ଜାଣିଛ ?

ସନ୍ତୋଷ ॥ ଚରିତ୍ର କଥାଟା ମୁଁ କ'ଣ ଜାଣିପାରୁନି । ଚରିତ୍ର ମାନେ କ'ଣ କେଜାଣି...ଚରିତ୍ର କ'ଣ ମୁଁ ଜାଣିନି ।

କାକଳୀ ॥ ଆମେ ଭଲ ଲୋକ ଖରାପ ଲୋକ ଦେଖିଲେ ଯେମିତି ଭଦ୍ରଲୋକ ବା ଦୁଷ୍ଟ ଲୋକ ବୋଲି କହୁ, ସେମିତି ।

ସନ୍ତୋଷ ॥ ମଣିଷ ମାନେ ମଣିଷ । ଅସଲ କଥା, ଭଲ କ'ଣ ଖରାପ କ'ଣ ମୁଁ ଜାଣିନି । କେମିତି କହିବି ? ଯୋଉଟା ଯେମିତି ସେଇଟାକୁ ସେଇଆ ବୋଲି ଧରିନିଏ । ସବୁ ଭଲ, ପୁଣି ସବୁ ଖରାପ ହୋଇପାରେ । ମୋ' ମାଇପ ମତେ ଆଜି ବାଡ଼େଇଛି...ମୁଁ ବି ତାକୁ ନଧ୍ଁମ ପିଟିଲି । ମୁଁ ଠିକ୍ କଲି ନା ଭୁଲ୍ କଲି, ମୁଁ ତ ଜାଣିନି । ମା' କସମ୍...!!

କାକଳୀ ॥ ଭଲ ଆଉ ଖରାପ ଚିହ୍ନିବା ପାଇଁ କେବେ ଚେଷ୍ଟା କରନା ତମେ ?

ସନ୍ତୋଷ ॥ ଖରାପ କ'ଣ ? ମୁଁ ଯାହା କରୁଛି ସବୁ ଭଲ । ଇଚ୍ଛା ହେଲା ମଦ ପିଉଛି...ଇଚ୍ଛା ହେଲା ଛୁଞ୍ଚି ଚଲୋଉଛି । କୋଉଟା ଭଲ ?

କାକଳୀ ॥ ତମକୁ ବାବ୍‌ଲୁ ସବୁ କଥା କୁହେ ?

( ବାହାରୁ କିଛି ପରଦା ନେଇ ଆସିଲା ବାବ୍‌ଲୁ )

ବାବ୍‌ଲୁ ॥ ହେଇଟି, ଗୁରୁ ! ମୁର୍ଗୀ କା ମାଂସ ରେଡ଼ି ?

ସନ୍ତୋଷ ॥ ମା' କସମ୍, ଏଇ ଯୋଉ ମୁର୍ଗୀ ଘର ଭିତରେ ରଖିଚୁ...

ବାବ୍‌ଲୁ ॥ କ'ଣ ହେଲା ?

ସନ୍ତୋଷ ॥ ମା' କସମ୍, ମୁଣ୍ଡଟା ମୋର ଖରାପ ହେଇଗଲା ।

ଃ ଝୋଟକଣ ଃ

ବାବ୍‌ଲୁ ॥ (କାକଳୀକୁ ବ୍ୟାଗ ଦେଇ) କ'ଣ ଏମିତ ହେଲ ? ତୋର ତ ମୁଣ୍ଡଟା ମଦ ବୋତଲ ଭିତରେ ବୁଡ଼ିଯାଇଚ; ଖପ୍‌ପ ହେଲ କୁଆଡ଼ୁ ?

ସତ୍ତାଶ ॥ ତମର ଇଏ···ମାନେ କ'ଣ ଯେ କହିବ···ଶଳା ମୋର ମୁଣ୍ଡଟା ଘେଟେଇ ଖାଇବା ଅବସ୍ଥାରେ ଥିଲେ ।

କାକଳୀ ॥ ଖାଇବା ଉପରେ ଥିଲେ କ'ଣ ? ଏଣିକ ଘେଟେଇ ଖାଇବ ।

ବାବ୍‌ଲୁ ॥ (କାକଳୀକୁ ଇସାରା କରି) କେମିତ ଦେଖୁଚୁ ?

ସତ୍ତାଶ ॥ ମା' କସମ୍ ! କଏ କରେ ଇଏ ?

ବାବ୍‌ଲୁ ॥ ଓସ୍ତାଦୌ କା ଓସ୍ତାଦ୍; ଧୀପେନ୍‌ର ଚଢ଼ୁଆ । ଶାଳା ଧୀପେନ୍ ଗୋଟାଏ ଲୁଗା ନେଇ ଗୋଡ଼େଇଥିଲା । ଛକ୍‌କା ଛଡ଼େଇ ଦେଇଥାନ୍ତା । ଲଖିଆ କହିଲ ଧୀପେନ୍‌କୁ କୁଆଡ଼େ ପୋଲିସ୍ ଧରିନେଇଚ ।

ସତ୍ତାଶ ॥ ମା' କସମ୍ ! ଆରେ ସେଇ ମାଷ୍ଟ୍ରାଣୀଟା କଥା ? ଠିକ୍ ହେଇଚ ଶାଳା ।

ବାବଲୁ ॥ ଏସ୍, ଦ' କପ୍ ଚା' କର ।

ସତ୍ତାଶ ॥ ଓୁଃ ଓୁଃ ଗୁରୁ ! କ୍ୟା ଫର୍‌ମାଇସ୍ ହେ ଶାଳା । ଏଣିକ ଘରେ ବସି ଚା' ମିଳିବ ।

ବାବ୍‌ଲୁ ॥ ମିଳିବ ଯେ ଶଳା ଅସଲ ମାଲ୍ କାହିଁ ?

ସତ୍ତାଶ ॥ ଆଉ ଟିକଏ ନେଇଆସିଚ । କିନ୍ତୁ ମାଷ୍ଟ୍ରାଣୀ ମନା କରିଛନ୍ତି । ଏଣିକ ମଦ ବଦଳରେ ଯଦ ଖାଲି ଚା' ପିଆହବ ଶାଳ ମୋର ଏଠିକି ଆସିବା ବନ୍ଦ୍ ।

ବାବଲୁ ॥ ଗୁଲି ମାର ତମର ମାଷ୍ଟ୍ରାଣୀକୁ । ନିକାଲ୍ ମାଲ୍ । ଆଣିଚୁ ନା ନାହିଁ ?

ସତ୍ତାଶ ॥ ଆଣିଚ ଗୁରୁ, ଦ'ଟା ଗିଲସ ମଗାଅ ।

ବାବ୍‌ଲୁ ॥ ଲଓ, ଦ'ଟା ଗିଲସ ଲଓ ।

କାକଳୀ ॥ ( ଭିତରୁ ) ଏଠି ଗିଲାସ ଫିଲାସ କିଛି ନାହିଁ ।

ବାବ୍‌ଲୁ ॥ ଏସ୍ ! ମୁଁ କହୁଚ ଗିଲସ ଆଣ ।

କାକଳୀ ॥ ଏଠି କୋଉଠି ଗିଲାସ ଅଛି ମୁଁ ଜାଣିନ ।

ବାବ୍‌ଲୁ ॥ ସବ ଜାଣିଚୁ ଶାଳୀ, ନ ଜାଣିଥିଲେ ଏଣିକ ଜାଣିବା ପାଇଁ ବାଧ ।

କାକଳୀ ॥ ମୁଁ ଜାଣିନ । ତମେ ଜାଣିଥିଲେ ନେଇଯାଅ ଆସି ।

ବାବ୍‌ଲୁ ॥ (କର୍କଶ ଗଳାରେ) ବାବ୍‌ଲୁ ଯାହା ଆଦେଶ ଦିଏ ଅନ୍ୟମାନେ ପାଳନ କରନ୍ତି । ଯିଏ ଶାଳା କାହାର ଆଦେଶ ମାନେନା । (କିଛି ନ ଶୁଣି) ଯିବ ?…ଯିବ ଏଇନେ ? ଦେଖିବୁ ?

କାକଳୀ ॥ ଖୁବ ଦେଖେଇଲୁ ବାବୁ । ଅନେକ ଦେଖିଛ ।

ବାବ୍‌ଲୁ ॥ (ହଠାତ୍ ରାଗରେ) ଶାଳା ବଜ୍ଜାତ୍ ଟୋକା, ମୁହଁ ଉପରେ ଜବାବ ଦଉଚ ! (ଯାଇ ପାଖରେ ଠିଆ ହେଇଛି) ତଣ୍ଟି ଚିପିଦେବି । ଶାଳା ମତେ ସନ୍ତୋଷ ଆଗରେ ଅପମାନ ଦଉଚୁ ? ପାଟିରେ ଠିପି ଲଗେଇଦେବି ।

ସନ୍ତୋଷ ॥ ଥାଉ ଗୁରୁ, ମିଛେ ମିଛେ ମାରନ୍ତୁ । ଗିଲାସ ନେଇଆସେ ।

ବାବ୍‌ଲୁ ॥ ନା, ଗିଲାସ ଦରକାର ନାହିଁ, ଆମେ ବୋତଲରେ ପିଇବା । (ସନ୍ତୋଷଠାରୁ ବୋତଲ ଆଣି ଢକ୍ ଢକ୍ କରି ପିଇଛି) ଆଜ୍ ଧନ୍ଦା କେମିତି ଚାଲିଚ ?

ସନ୍ତୋଷ ॥ ଧନ୍ଦା ଏକଦମ୍ ମନ୍ଦା । ଶାଳା ଡାକ୍ତର କହୁଚି କଞ୍ଚା ମାଲ ପିଇଲେ କଲିଜାରେ ପୋକ ହୋଇଯିବ ମା' କସମ୍ !

ବାବ୍‌ଲୁ ॥ ମାଲ୍‌ଟା ଏଇଥର ଭଲ, ଫଷ୍ଟ୍ କରି ମୁଣ୍ଡକୁ ଧରୁଚି ।

ସନ୍ତୋଷ ॥ ଆଜି ମାଲ୍ ପିଇ ମୁଁ କଲିଜାଟାକୁ ପୋଡ଼ିଦେବି ।

ବାବଲୁ ॥ ଶାଳା ମୁର୍ଗୀ କା ମାଂସ ଖାଇଁ ବେ ?

ସନ୍ତୋଷ ॥ ମୁର୍ଗୀ କା ଅଣ୍ଡା ଖାଇବା ଭଲ ।

ବାବ୍‌ଲୁ ॥ ଷ୍ଟୁପ୍ ଶାଳା ଟେଇଲର୍ କା ବଚ୍ଚା ! ମୁର୍ଗୀ ମାଂସ ।

ସନ୍ତୋଷ ॥ ମୁର୍ଗୀ ଅଣ୍ଡା ।

ବାବ୍‌ଲୁ ॥ ତୁ ଶାଳା ମୁର୍ଗୀ ମାଂସ ଖୋଇବାପାଇଁ ଜବାବ କରୁଥିଲୁ ।

ସନ୍ତୋଷ ॥ ମୁର୍ଗୀ ଅଣ୍ଡା ।

ବାବ୍‌ଲୁ ॥ ଷ୍ଟୁପ୍ ! (ଦେଲା ଗୋଟେ ଥାପଡ଼)

ସନ୍ତୋଷ ॥ ମାରିଲୁ ? ଶାଳା ଗୁରୁ କା ବଚ୍ଚା…ମତେ ମାରିଲୁ !! (କାନ୍ଦିଲା) ଆଉ କେବେ ମଦ ପିଇବି ନାହିଁ । ମା' କସମ୍, ଆଉ ମଦ ପିଇବି ନାହିଁ ..

ବାବ୍‌ଲୁ ॥ ଷ୍ଟୁପ୍, ଶାଳା ମାତାଲ କାହାଁକା !!

ସନ୍ତୋଷ ॥ ନା, ମୁଁ ମଦ ପିଇବି ନାହିଁ ।

ବାବ୍‌ଲୁ ॥ ତତେ କିଏ କହୁଥିଲା ବେ ମଦ ପିଇବା ପାଇଁ ?

: ପର୍ଦ୍ଦଢରଣ :

ସତୀଶ ॥ ମୁଁ ଆତ୍ମହତ୍ୟା କରିଦେବି, ଶାଲା ରେଲ ଲାଇନ୍‌ରେ ଶୋଇ ପଡ଼ିବି । (ସତୀଶ କାନ୍ଦୁଥାଏ)

ବାବ୍‌ଲୁ ॥ କାହିଁକି, କ'ଣ ହୋଇଚି ତୋର ?

ସତୀଶ ॥ ଶାଲା ମୁର୍ଗୀ କା ମାଂସ ମିଳିଲା ନାହିଁ ।

ବାବ୍‌ଲୁ ॥ ନ ମିଳିଲେ ନାହିଁ, ତୁ' ଘରକୁ ଯା ।

ସତୀଶ ॥ ମୋର ଘର ନାହିଁ, ବାପ ନାହିଁ, କେହି ନାହିଁ···ମା କସମ୍ !

ବାବ୍‌ଲୁ ॥ ମାତାଲ, ସମ୍ଭାଳି ପାରୁନୁ ଯଦି ଏତେ ପିଇଛୁ କାହିଁକି ?

ସତୀଶ ॥ ଧୋକାବାଜ୍ । ମୁଁ ଧୋକାବାଜ୍ ଭିତରେ ବଞ୍ଚିପାରିବି ନାହିଁ ଗୁରୁ, ଛୁରି ଚଳେଇଦେବି ।

ବାବ୍‌ଲୁ ॥ କ'ଣ ହେଉଚି କହୁନୁ କାହିଁକି ? (ସତୀଶକୁ ହଲେଇ ଦେଇ) ଗୁରୁ !!

ସତୀଶ ॥ ପୁଣି ଶଳା ଲକ୍ଷ୍ମିଆ ମହାଜନ ଘରେ ପଶିଥିଲା । ବଡ ସାଙ୍ଗରେ ଲଟର୍‌ପଟର୍ । ଖୁନ୍ କରିଦେଇଥାନ୍ତି ଶଳାକୁ ।

ବାବ୍‌ଲୁ ॥ ଶାଲା ନେସେଡ଼ା, ଶାଳା ନୁଙ୍ଗୁରା, ବଜେଇଲୁନି କାହିଁକି ସେଇଠାକୁ ?

ସତୀଶ ॥ ପିଟିଛି, ଶାଲାର ମୁଣ୍ଡ ଫଟେଇଦେଇଛି; ମା' କସମ୍ ! ଦୌଡ଼ି ପଳେଇଲା କାହିଁ କେଉଁ । ସେଇଠୁ ମାଇପ ସାଙ୍ଗରେ ଝଗଡ଼ା··· ସିଏ ମତେ ପିଟିଲା, ମୁଁ ତାକୁ ପିଟିଲି । ମୁଁ ତାକୁ ପିଟିଲି, ସିଏ ମତେ ପିଟିଲା···

ବାବ୍‌ଲୁ ॥ ଏସ୍ତା କରୁଛୁ ଶାଲା, ଗୋଟେ ସମାଧାନ କରିପାରୁନୁ ୟାର ?

ସତୀଶ ॥ କିଛି ହୋଇପାରିବନି, ମୁଁ ରେଲଲାଇନ୍ ତଳେ ପଡ଼ିଯିବି ।

ବାବ୍‌ଲୁ ॥ ଚୋପ, ସିଧା ଘରକୁ 'ଯା' ! ଖାଇପିଇ ଶୋଇବୁ ।

ସତୀଶ ॥ ମୋର କିଛି ଗୋଟାଏ ଖାଇବା କଥା ।

ବାବ୍‌ଲୁ ॥ ଯା', ଘରକୁ ପଳେଇ ଯା' ।

ସତୀଶ ॥ ମୁର୍ଗୀ କା ଅଣ୍ଡା ମିଳିଲା ନାହିଁ । କ'ଣ କରିବି ?

ବାବ୍‌ଲୁ ॥ ମୁର୍ଗୀ କା ମାଂସ ?

ସତୀଶ ॥ ରାନ୍ଧିବାପାଇଁ ମନା କଲା ।

ବାବ୍‌ଲୁ ॥ ଯାହା ହୋଇଚି ଖାଇଦେଇ ଶୋଇପଡ଼ ।

ସତୀଶ ॥ ମୁର୍ଗୀ କା ମାଂସ ନ ମିଳିଲେ··· ?

ବାବ୍‌ଲୁ ॥ ତମ ଘରେ ଅନେକ ଚଟିଆ ବସା କରି ଅଛନ୍ତି, ସେଇଥିରୁ ଗୃହିଣୀ ପୋଡ଼ି ଖାଇ ଦେ' ।

ସଞ୍ଜୀବ ॥ ହେଃ !

ବାବ୍‌ଲୁ ॥ ଆରେ ଥରେ ଚାଖି ଦେଖ୍, କେମିତି ଲାଗୁଚି !

ସଞ୍ଜୀବ ॥ କ'ଣ ହେବ ?

ବାବ୍‌ଲୁ ॥ ଯୌବନରେ ଜୁଆର ଆସିବ । ବଡ଼ ଭାଉଜ ତୋ' ଉପରେ ଖୁସି ହେଇଯିବ ।

ସଞ୍ଜୀବ ॥ ମା' କସମ୍ ?

ବାବ୍‌ଲୁ ॥ ହଁ ।

କାକଳୀ ॥ (ଭିତରୁ) କ'ଣ ସବୁ ବାଜେଟା ଯାଏଁ ଏଠି ଗୋଟାଏ ପାଳ ଲାଗିଥିବ ନା କ'ଣ ? ଏଠି ବେଶେଇ ସରିଗଲାଣି ।

ସଞ୍ଜୀବ ॥ ବାଃ ! ଆଜି ଏଇଠି ଖାଇନେବାପାଇଁ ଇଚ୍ଛା ହଉଚି, ଗୁରୁ । ମାଷ୍ଟ୍ରାଣୀ ହାତର ରନ୍ଧା ଚାଖିବାପାଇଁ ଇଚ୍ଛା ହଉଚି ।

କାକଳୀ ॥ (ବାହାରି ଆସି) କ'ଣ କହିଲ ? ମୋ' ହାତର ରନ୍ଧା ଚାଖିବ ?

ବାବ୍‌ଲୁ ॥ ଯା', ଏଠି କିଛି ମିଳିପାରିବ ନାହିଁ ।

ସଞ୍ଜୀବ ॥ କିଛି ମିଳିବ ନାହିଁ ?

କାକଳୀ ॥ ମିଳିବ । (ଗୋଟାଏ ଗୁଆ କାଟୁଣୀ ଧରି ଆସି) ମିଳିବ । କ'ଣ ଖାଇବାକୁ ଇଚ୍ଛା ଅଛି ?

ସଞ୍ଜୀବ ॥ ଗୁରୁ, ମୁଁ ଯାଉଛି । ଠିକ୍ ମାଷ୍ଟ୍ରାଣୀ ରଖିଚୁ ଶାଳା !

(ଦୌଡ଼ି ଚାଲିଗଲା)

ବାବଲୁ ॥ ଏସ୍ !

କାକଳୀ ॥ କ'ଣ କହୁଚ ?

ବାବ୍‌ଲୁ ॥ ମୋ' ସାଙ୍ଗକୁ କହିଲବାଲା ତୁ କିଏ ?

କାକଳୀ ॥ ଭଦ୍ରମହିଳାଙ୍କ ସାଙ୍ଗରେ କେମିତି କଥାବାର୍ତ୍ତା କରିବାକୁ ହୁଏ ତମେ ସବୁ ଏ ପର୍ଯ୍ୟନ୍ତ ଶିଖିଲନି ।

ବାବ୍‌ଲୁ ॥ ତୁ' ଶିଖେଇବାକୁ ଆସିଲୁ ଏଠିକି ? ଶାଳୀ ବଜାରି !

କାକଳୀ ॥ କ'ଣ କହିଲ ?

ବାବ୍‌ଲୁ ॥ (ହିଂସ୍ରଭାବେ) ଶଟ୍‌ଅପ୍ ! ଶାଳୀର ଜିଭ ଉପୁଡ଼େଇଦେବି ।

ଃ ଯବନିକା ଃ

[ମଦନଶାରେ ଖୁବ୍ ଜୋରରେ ବାଡ଼େଇଛନ୍ତି କାକଳୀକୁ । କାକଳୀ ଚିତ୍କାର କରୁଛି । ତା'ପରେ ବାବୁଲୁ ବାଡ଼େଇବା ଛାଡ଼ିଦେଇ ଆସି ଖଟ ଉପରେ ବସିଯାଇଛି । ସିଗାରେଟରେ ନିଆଁ ଲଗେଇ]

ରଗଉଛନ୍ତି ମତେ ? ଆହୁରି ମାଡ଼ ହବ । ଅରେ କହୁଚି ତତେ, ବାବୁଲୁ ଗୁଣ୍ଡା କାହାରି ଶାସନ ମାନେନା । ସେ ନିଜେ ଶାସନ କରି ଆସିଚି ।

କାକଳୀ ॥ (କାନ୍ଦି କାନ୍ଦି ଉଠିଚି) ମାର । ଆହୁରି ମାର ମତେ, ମାରି ମାରି ତମ ମନ ଶାନ୍ତ ହେଲା ପର୍ଯ୍ୟନ୍ତ ।

ବାବୁଲୁ ॥ ଆହୁରି ମାରିବ । ଷ୍ଟପ୍ କର ।

କାକଳୀ ॥ ମୁଁ ନିଜୁ ଥିବାର ପ୍ରତିବାଦ କରିବ । ଗୋଟାଏ ଘର ଘର ଭଳି ହେବା ଉଚିତ ।

ବାବୁଲୁ ॥ ଭାରି ଘର ଦେଖେଇଲାବାଲା ଆସିଗଲେ ମୋ' ଘରକୁ ! ଘର ! ସମସ୍ତେ ସମସ୍ତଙ୍କ ପାଖରେ ଯୋଡ଼ିଠି ଛଳନା କରନ୍ତି ସେଇଠି, ଘର ! ମନ ଖୋଲି ନେଜ୍ନ କରୁଛି କହିପାରିବେ ନାହିଁ···କରିପାରିବେ ନାହିଁ···ଭୁଲ୍ ହଉ ଠିକ୍ ହଉ ସମସ୍ତେ ଗୋଟାଏ ବାବାର କଥା ମାନିବାପାଇଁ ବାଧ୍ୟ···ନ ମାନିଲେ ତମେ ସୁନା ପୁଅ ନୁହଁ···ମାଇପ ଯାହା କହିବ ତାକୁ ଅକ୍ଷରେ ଅକ୍ଷରେ ପାଳନ କର; ନ ହେଲେ ତମେ ଗୋଟାଏ ଅଯୋଗ୍ୟ ସ୍ୱାମୀ···ସମ୍ପର୍କ ନାଁରେ ଅଜସ୍ର ଛଳନା··· କୋଟି କୋଟି ମିଛ···ଅଥଚ ପରଦା ଆଢୁଆଳରେ ଅସଂଖ୍ୟ ପାପ···ତାର ନାଁ ଘର !! 'ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ', 'ସତ କହିବାକୁ କିଆଁ ଡରିବି, ସତ କହି ମଲେ ପଛେ ମରିବି'···ତା'ପରେ ପରେ ମିଛ କହିବାକୁ ବାଧ୍ୟ···ଅଭିନୟ କରିବା ପାଇଁ ବାଧ୍ୟ···କୌଣସି ସମ୍ପର୍କ ସହଜ ନୁହେଁ·· ସ୍ୱଚ୍ଛନ୍ଦ ନୁହେଁ···ସ୍ୱାଭାବିକ ନୁହେଁ···(ଟିକିଏ ପରେ) ନା, ତୋ'ର ଆଦର୍ଶରେ ମୁଁ ବିଶ୍ୱାସ କରେନା, କାକଳୀ ! ସେଇଥିପାଇଁ ଅନେକ ବର୍ଷ ହେଲା ସେଗୁଡ଼ାକ ପଛରେ ପକେଇଦେଇ ମୁଁ ଚାଲିଆସିଚି । ମୁଁ ଅସାମାଜିକ, ମୁଁ ଅମଣିଷ, ମୁଁ ଗୁଣ୍ଡା···

କାକଳୀ ॥ ନା । ତମେ ମଣିଷ । ଅମଣିଷ ନୁହ । ମଦ ପିଇ ଅମଣିଷ ହେଇଯାଉଚ ।

ବାବ୍‌ଲୁ ॥ ଗ୍ରେଟ୍ ! ତମ ପ୍ରାଇମେରୀ ସ୍କୁଲରେ ପିଲାଙ୍କୁ ସେ ପାଠ ପଢ଼େଇବୁ ଯା'—

କାକଳୀ ॥ ଉଚିତ ଟା ସବୁବେଳେ ଉଚିତ । ପ୍ରାଇମେରୀ ସ୍କୁଲ ପିଲା ଓ ତମ ଭିତରେ କ'ଣ ତଫାତ୍ ?

ବାବ୍‌ଲୁ ॥ (ପୁଣି ଉତ୍‌କ୍ଷିପ୍ତ ହୋଇଉଠିଚ୍ଛ) ପୁଣି ଯୁ କ୍ତ କଲୁ ମୋ' ସାଙ୍ଗରେ ?

କାକଳୀ ॥ ମାଶବ ତ ? ମାର । ମୋର ପଇସା ନାହିଁ ବୋଲି, ବାବା ମୋର ମରିଯାଇଛନ୍ତି ବୋଲି, ମୁଁ ଗୋଟାଏ ଝିଅ ଆଉ ଚାକିରି କରୁଚ ବୋଲି ସମସ୍ତେ ମୋ'ଠୁ ଫାଇଦା ଉଠେଇବାକୁ ଚାହିଁଛନ୍ତି । କିଏ କୋଉ ଭାବରେ ଲୁଟିନେଇ ରାସ୍ତା ଉପରକୁ ଫୋପାଡ଼ି ଦେଇଛନ୍ତି ମତେ । ଦୀପେନ୍ ଗୋଡ଼େଇଥିଲା··· ଛୁରୀଟା ହେଲେ ଏ ଗୁଡ଼ରେ ଭୁଷି ଦେଇଥାନ୍ତା, ମରି ଯାଇ ଥାନ୍ତି । ସେ ତୁଏତ ଅନେକ ଭଲ ହୋଇଥାନ୍ତା । ମୁଁ ପୋଡ଼ାମୁହାଁ କାହିଁକି ଯେ ବଞ୍ଚିବାକୁ ଏତେ ବ୍ୟାକୁଳ ହେଇଉଠିଲି···ଦୌଡ଼ି ଆସି ଆଉ କାହା ଘର ମିଳିଲାନି···ଶେଷରେ ଗୋଟାଏ···(କହିଁ କହିଁ ହୋଇ କାନ୍ଦିଚ) ତମେ କହୁଥିଲ ନା ବାବ୍‌ଲୁ, ଛୁରୀ ଚଳେଇଲାବେଳେ ତମ ହାତ ଥରିଉଠେନି ବୋଲି···?

ବାବ୍‌ଲୁ ॥ କାକଳୀ ! ଦେଖ୍ ଶଳା ମତେ ସେ କନ୍ଦାକଟା ଭଲ ଲାଗେନି ।

କାକଳୀ ॥ ମୋ' ଗୁଡରେ ଛୁରୀଟା ଭୁଷିଦେଇ ଡ୍ରେନ୍ ଭିତରେ ପକେଇ ଦିଅ ।

ବାବ୍‌ଲୁ ॥ ମତେ ରଗେଇବୁନି କେବେ । ରାଗିଗଲେ ମୋର କିଛି···ମାନେ କ'ଣ ଯେ ହେଇଯାଏ···

[ ବାବ୍‌ଲୁର ଗଳା ଅନେକ ନରମି ଯାଇଥାଏ ଏବଂ କଥାରେ ଗୋଟାଏ କେମିତି 'ଅନୁତାପ-ଅନୁତାପ' ଭାବ ]

କାକଳୀ ॥ ନା, କ'ଣ କାହିଁକି ହେଇଯିବ ? ତମେ ବାବ୍‌ଲୁ ଗୁଣ୍ଡା···ତମର ଏ ବସ୍ତିରେ ଅନେକ ଖାତିର···ଗର୍ଭିଣୀ ଗାଈ ତମକୁ ବାଟ ଛାଡ଼ିଦିଏ···

: ଅଣଚାଳିଶ :

ବାବ୍‌ଲୁ ॥ ସେପ୍ତେଇ ହେଇଚ ?

କାକଲୀ ॥ ହଁ ।

ବାବ୍‌ଲୁ ॥ କ'ଣ ଦ'ଟା ଖାଇବାକୁ ଦେ' । ମୁଁ ଶୋଇବାକୁ ଗ୍ଲହେଁ ।

କାକଲୀ ॥ ବସ, ମୁଁ ଆଣି ଦଉଚ । (କାକଲୀ ଯାଇଚ)

ବାବ୍‌ଲୁ ॥ ତୁ' ଭାବୁଚୁ ମୋ'ର କ'ଣ ଘର ନ ଥିଲ ? ବାପା-ମା-ଭାଇ ସମସ୍ତେ ଥିଲେ । ବର୍ତ୍ତମାନ ବ ଅଛନ୍ତି । ମୁଁ ସେମାନଙ୍କ କଥା ମନେ ପକାଇବା ପାଇଁ ଇଚ୍ଛା କରେନା । ସେମାନଙ୍କ ଠିକଣା ଜାଣିବା ମୋର ଦରକାର ହୁଏନା । କାହିଁକି ? ଜୀବନରେ ହୁଏତ ସେଠି ଆଉ ମୁହଁ ଦେଖେଇ ଠିଆ ହୋଇପାରିବି ନାହିଁ, ସେମାନଙ୍କ ପରିଚୟ ଦେଇ ସେମାନଙ୍କୁ ସମାଜ ଆଖିରେ ଗ୍ରେଟ କରିଦେଇ ପାରିବ ନାହିଁ···

( କାକଲୀ ଖାଇବା ଥାଳ ଆଣି ରଖି ଦେଇଚ ଟେବଲରେ )

ବାପା ଚାହିଁଥିଲେ ମୁଁ କମ୍ପିଟିଟିଭ୍ ପରୀକ୍ଷା ଦେଇ ଅଫିସର ହେବି । କାରରେ ବୁଲିବି । ବଡ଼ ପୁଅ ହେଲି ନେତା ··ଖାଇବାକୁ ପାଉଛୁ, କିନ୍ତୁ ଜୀବନ ନାହିଁ । ଆଉ ଗୋଟାଏ ତାର ଲଭ୍ ମ୍ୟାରେଜ୍ କରି ବାହାରେ । ମୁଁ···ବାବ୍‌ଲୁ ··ଗୁଣ୍ଡା···କୁଖ୍ୟାତ । ବାପାଙ୍କର ହଠାତ୍ କ'ଣ ହେଲି କେଜାଣି, ସେ ଅସ୍ୱାଭାବିକ ଭାବରେ ଗମ୍ଭୀର ହେଇଗଲେ । ନିଜ ପ୍ରତି ଘୃଣା···ଅନ୍ୟମାନଙ୍କ ପ୍ରତି ଗୋଟାଏ ଅସହ୍ୟ ଭାବ । ଏକଲି, ଘର ଭିତରେ ଆଲୁଅ ଲିଭେଇ ଦେଇ କାନ୍ଦୁଥାନ୍ତି, ଆଉ ବେଳେ ବେଳେ ଘର ଭିତରେ କବାଟ ଦେଇ ମନକୁ ମନ ଚିତ୍କାର···

( ହଠାତ୍ ଆଲୁଅ ଲିଭିଗଲ ଓ ଶୁଭିଲ ଜଣେ ବୃଦ୍ଧଙ୍କର ସ୍ୱର··· )

ବାପା ॥ ମୁଁ···ମୁଁ ଦାୟୀ । ମୁଁ ସ୍ୱୀକାର କରୁଚ, ବାପ ହିସାବରେ ମୁଁ ଅଯୋଗ୍ୟ । ନ ହେଲେ ବାବ୍‌ଲୁ ମଦ ଖାଇ ରାତିଅଧରେ ଘରକୁ ଫେରନ୍ତା, ଆଉ ମୁଁ ଚୁପ୍ କରି ସହିଯାଇପାରନ୍ତି ? ହଜାରେ ଥର ମନାକଲି ତୁ ସେଇ କମ୍ୟୁନିଷ୍ଟ୍ମାନଙ୍କ ପାଖକୁ ଯାଆନା, ବରଂ ପ୍ରତିଯୋଗିତାରେ ଭାଗ ନେ' ନା । ଶୁଣିଲନି । ମୋ' କଥାକୁ ଖାତିର ନାହିଁ··ମୋ' ଉପଦେଶକୁ ଭ୍ରୂକ୍ଷେପ ନାହିଁ । ଆଜି ପୁଣି ଚର୍ଚ୍ଚରେ ନାଆଁ ଲଗେଇଚ । ଆଜି ଆଁସୁ ଝିଏ !!

ଃ ଗ୍ଲଲିଶ ଃ

ବାବ୍‌ଲୁ ॥ ( ପ୍ରବେଶ କରିଚି । ନୀରବରେ । ଦୋଷୀ ଭଳି )

ବାପା ॥ କୁଆଡ଼େ ଯାଇଥିଲୁ ?

ବାବ୍‌ଲୁ ॥ କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ଜାଗାକୁ ଯାଇନି ।

ବାପା ॥ ତତେ ହଜାର ଥର ମନା କରିଚି ସେ ଜମ୍‌ନାସିୟମ୍‌କୁ ଯିବୁନି ।

ବାବ୍‌ଲୁ ॥ ସମୟ କଟେଇବା ପାଇଁ କିଛି ଗୋଟାଏ କରିବା ଦରକାର ।

ବାପା ॥ ଗୃ' ଦୋକାନ ବେଞ୍ଚ ଉପରେ ଗଣ୍ଡେ ଟୋକାଙ୍କ ସହିତ ଆଡ୍‌ଡା ମାରିଲେ ବେଶ୍ ସମୟ କଟିଯାଉଚି ?

ବାବ୍‌ଲୁ ॥ ଆଉ କ'ଣ କରନ୍ତି ?

ବାପା ॥ ପାଠ ? ବହି ସହିତ ତ ସମ୍ପର୍କ ନାହିଁ ?

ବାବ୍‌ଲୁ ॥ ମୋ' ଦେଇ ପାଠ ହବନି ।

ବାପା ॥ ଆତ୍ମହତ୍ୟା କରିଦେ ।

ବାବ୍‌ଲୁ ॥ କାହିଁକି ? ବଞ୍ଚିବାପାଇଁ ମୁଁ କ'ଣ ଅକ୍ଷମ ?

ବାପା ॥ ମାର୍‌ପିଟ୍ କରି, ଗୁଣ୍ଡା ହେଇ ବଞ୍ଚିବୁ ?

ବାବ୍‌ଲୁ ॥ ମନ୍ଦ କ'ଣ ?

ବାପା ॥ କାହା ମୁଣ୍ଡ ଫଟଉଚୁ···କାହାକୁ ଛୁରି ମାରୁଚୁ···କେତେଦିନ ପୋଲିସ୍‌କୁ କହି ତତେ ଖଲାସ କରୁଥିବି ?

ବାବ୍‌ଲୁ ॥ ଖଲାସ କରିବାପାଇଁ ମୁଁ ତମକୁ କେବେ ଅନୁରୋଧ କରିନି ।

ବାପା ॥ ଆଜି ଚର୍ଚ୍ଚ ପୋଡ଼ିରେ ତୁ ଥିଲୁ ?

ବାବ୍‌ଲୁ ॥ ହଁ, ମୁଁ ଯାହା ଠିକ୍ ଭାବେ, ସେୟା କରେ ।

ବାପା ॥ ପୋଲିସ୍ ଆସିଥିଲା । ଆରେଷ୍ଟ କରିବ ।

ବାବ୍‌ଲୁ ॥ ଗ୍ଲଲିସିବ । ଖୁସିରେ । ଏ ଘରଟା ମଧ୍ୟ ମୋ' ପାଇଁ ଗୋଟାଏ ସେଲ୍ ।

ବାପା ॥ ମରି ଯା' ! Die.

ବାବ୍‌ଲୁ ॥ ତା' ହେଲେ ଏତେ ଗୁଡ଼ାଏ ଉପଦେଶ ଦେବା କ'ଣ ଦରକାର ? ଚୁପ୍ ରୁହ ।

ବାପା ॥ କ'ଣ କହିଲୁ ?

ଃ ଏକସ୍ଲାଶ ଃ

[ ବାପା ଉତ୍ତେଜିତ ହୋଇ ବାବ୍‌ଲୁକୁ ପିଟିବା ଆରମ୍ଭ କଲେ । ବାବ୍‌ଲୁ ପକ୍ଷରୁ କୌଣସି ପ୍ରତିବାଦ ନ ଥିଲା ବାପାଙ୍କ ରାଗ କ୍ରମଶଃ ବଢ଼ିବାକୁ ଲାଗିଲା ଏବଂ ସେ ଆହୁରି ଅଧିକ ହିଂସ୍ର ଭାବରେ ପିଟିବାକୁ ଲାଗିଲେ ବାବ୍‌ଲୁକୁ । ତଥାପି ତା' ଆଡ଼ୁ କୌଣସି ପ୍ରତିବାଦ ନ ଥିଲା । ତା'ପରେ ସେ ବିରକ୍ତ ହୋଇ ଚାଲିଗଲେ ।

ବାବ୍‌ଲୁ ଉଠିଲା । ଦାନ୍ତ ଓ ପାଟିରୁ ରକ୍ତ ବାହାରୁଥାଏ । ପାଖରେ କେହି ନାହିଁ । ଅତି ଅସହାୟ ଭାବରେ କାନ୍ଦିଲା ବବ୍‌ଲୁ···

ଅନ୍ଧାର । ଅନ୍ଧାର ଭିତରେ ଶୁଭୁଥିଲା··· ]

କାକଲୀ ।। ତା'ପରେ ?

ବାବ୍‌ଲୁ ।। ଏମିତି ଅନେକ ମାଡ଼ । ଘରେ ଅନେକ ଅଶାନ୍ତି । ତା'ପରେ ମତେ ବାପା ଆଉ କିଛି କହନ୍ତି ନାହିଁ···କାହାକୁ କିଛି କହନ୍ତି ନାହିଁ । ଏକୁଟିଆ, ସନ୍ଧ୍ୟା ହେଲେ, ଘର ଭିତରଟାରେ ଚୁପ୍‌ଚାପ ବସନ୍ତି । ମୋର ବାପାଙ୍କ ପ୍ରତି ଦୟା ଆସେ । ଅଥଚ ବେଳେବେଳେ ତାଙ୍କୁ ହଇରାଣ କରିବାପାଇଁ ଇଚ୍ଛା ହୁଏ ।

( ଈଷତ୍ ଫିକା ଆଲୁଅରେ ଦଶିଲା ବାପା ବସିଛନ୍ତି··· )

ବାବ୍‌ଲୁ ।। କିଏ ? ବାପା ?

ବାପା ।। ( କୌଣସି ଉତ୍ତର ନାହିଁ )

ବାବ୍‌ଲୁ ।। ସେଠି ଅନ୍ଧାରଟା ଭିତରେ କ'ଣ କରୁଛ ?

ବାପା ।। ( ନୀରବ )

ବାବ୍‌ଲୁ ।। ଜଳେଇବି ଆଲୁଅଟା ?

ବାପା ।। ନା ।

ବାବ୍‌ଲୁ ।। ମୁଁ ଆଲୁଅଟା ଜଳେଇବି ।

ବାପା ।। କାହିଁକି ?

ବାବ୍‌ଲୁ ।। ଇଚ୍ଛା ହଉଛି ତମକୁ ଡିଷ୍ଟର୍ବ କରିବାପାଇଁ ।

ବାପା ।। Get out !

ବାବ୍‌ଲୁ ।। ( ଆଲୁଅଟା ଜଳେଇ ) ଅନ୍ଧାରରେ ଖବରକାଗଜ ପଢ଼ୁଛ ?

ବାପା ।। ଆଃ ! ବନ୍ଦ କର ଆଲୁଅ ।

: ବସ୍ତ୍ରାଳଣ :

ବାବ୍‌ଲୁ ॥ ( ଲିଭେଇ ଦେଇଚ । ବାପା କେବଳ ଷ୍ଟେଟ୍‌ରେ ବସିବେ )
ଆଉ ଥରେ ତମକୁ ଦେଖିବାପାଇଁ ଇଚ୍ଛା ହଉଚ ।

ବାପା ॥ ନା, ମୁଁ ମନା କରୁଚ, କଲାନା ।

ବାବ୍‌ଲୁ ॥ କ'ଣ ଭାବୁଚ ?

ବାପା ॥ ତୋର ସେଇ ଖବର ନେବା ଦରକାର ନାହିଁ ।

ବାବ୍‌ଲୁ ॥ ତମ ଉପରେ ମୋର ରାଗ ହଉଚ ।

ବାପା ॥ ରାଗ ?

ବାବ୍‌ଲୁ ॥ ହଁ ।

ବାପା ॥ କାହିଁକି ?

ବାବ୍‌ଲୁ ॥ ମୋ' ଭଳିଆ ଗୋଟିଏ ଗୁଣ୍ଡା ପୁଅକୁ ଜନ୍ମ ଦେଇଥିଲ କାହିଁକି ?

ବାପା ॥ ମୁଁ ବୁଢ଼ା ଲୋକ । ମୋ' ସାଙ୍ଗରେ ଫାଜିଲାମି କରନା । ଯା'—

ବାବଲୁ ॥ ଫାଜିଲାମି ନୁହେ । ମୁଁ ଜାଣିବାକୁ ଚାହୁଁଚ, ମତେ ଏ ପୃଥିବୀକୁ
ତମେ ପଠେଇଲ କାହିଁକି ? ତମେ କ'ଣ ଜାଣିଥିଲ ମୁଁ ଜନ୍ମ ହେବି
ବୋଲି ? ମୁଁ ? ଏଇ କୁତ୍ସିତ ମୁଁ ??

ବାପା ॥ ସେଇଟା କେହି ଜାଣି ନ ଥାଏ ।

ବାବ୍‌ଲୁ ॥ ଜାଣି ନ ଥିଲ ଯଦି ମତେ ଏ ପୃଥିବୀ ଭିତରକୁ ଆଣିଥିଲ କାହିଁକି ?
ଆଣି ଏଇ ନିର୍ମମ ପୃଥିବୀ ଭିତରେ ଫୋପାଡ଼ିଦେଇ ତମେ ଚୁପ୍
ଚାପ୍ ଅଂଧାର ଭିତରେ ବସିପଡ଼ିଲ । ମୁଁ ଏଇକ୍ଷଣି କ'ଣ କରିବି ?

ବାପା ॥ ତୁ'···ତୁ' ଗୋଟାଏ···( କ'ଣ କହିବାକୁ ଯାଉଥିଲେ । କହି ନ
ପାରି ଅଟକିଗଲେ । ତା'ପରେ କିଛି ସମୟ ପରେ ) ମୁଁ କାହିଁକି
ଜନ୍ମ ନେଲି ମୁଁ ଏ ଯାଏଁ ଜାଣିନି ।

ବାବ୍‌ଲୁ ॥ ସେ କଥା ତମର ବାପା ଜାଣିଥିବେ ।

ବାପା ॥ ମୋ' ବାପା ବି ଜାଣନ୍ତି ନାହିଁ । କେହି କହିପାରିବେ ନାହିଁ ।

ବାବ୍‌ଲୁ ॥ କହିପାରିବେ ନାହିଁ, ଅଥଚ ଆଣିପାରିବେ ଏଇ ପୃଥିବୀ
ଭିତରକୁ···ଆଉ···ଆଉ ତା'ପରେ ?

ବାପା ॥ ତା'ପରେ ସବୁ ନିଜ ନିଜ ଦାୟିତ୍ୱ···

ବାବ୍‌ଲୁ ॥ ସେ ମରୁ, ବଞ୍ଚୁ, କଷ୍ଟ ପାଉ, ତା'ର ଯା' ହଉ··· ?

ବାପା ॥ ହଁ । ତୁ' ବର୍ତ୍ତମାନ ଯାଇପାରୁ ।

ବାବ୍‌ଲୁ ॥ ନା । ମୁଁ ଅଜସ୍ର ଆଲୁଅ ଜାଳି ତମକୁ ଦେଖିବି । ପୁଣି ଥରେ
ତମକୁ ଆବିଷ୍କାର କରିବି ।

ଃ ଯବନିକା ଃ

ବାପା ॥ ( ଚିତ୍କାର କରି ) ନା, ନା, ମୁଁ ମନା କରୁଚି ଆଲୁଅ ଜଳାନା ! ତୁ ମର, ନ ହେଲେ କ'ଣ ହଉଚୁ, ହଁ'...ମୋର ସେଥିରେ କିଛି ଯାଏ ଆସେ ନାହିଁ । ମୋର ଜୀବନ ମୋର...ତୁ ଯାହା ଇଚ୍ଛା ତାହା କର...ମୁଁ ଅଛି ଜନ୍ମଅନ୍ଧ । କିନ୍ତୁ ମତେ ଆଉ ଏମିତି କନ୍ଦାନା । [ଆଲୁଅ ଜଳିଲାବେଳକୁ କାକଳୀ ଓ ବାବଲୁ ପୂର୍ବବର୍ତ୍ତୀ ଅବସ୍ଥାରେ ଅଛନ୍ତି । କାକଳୀ ଆଳିଆଟା ନେଇ ଭିତରକୁ ଯାଇଛି । ]

ବାବଲୁ ॥ ତା'ପରେ ମୁଁ ଜାଣେନା ମୋର କ'ଣ ହେଇଗଲା । କ୍ରମଶଃ ମୁଁ ଘରଠାରୁ ଦୂରେଇଗଲି । କ୍ରମଶଃ...

କାକଳୀ ॥ ମତେ ନିଦ ମାଡ଼ିଲାଣି ।

ବାବ୍‌ଲୁ ॥ ଖଟିଆ ଗୋଟିଏ । ଶୋଇବା କେମିତି ?

କାକଳୀ ॥ ତମେ ଶୁଅ । ମୋର କିଛି ଅସୁବିଧା ହବନି । ମୋର ବେଡିଂ ଅଛି !

ବାବ୍‌ଲୁ ॥ ଇଏ ବି ଗୋଟାଏ ଅସୁବିଧା ।

କାକଳୀ ॥ ଅସୁବିଧା କ'ଣ ? ଏମିତି ଚଳିବାକୁ ହୁଏ ।

ବାବ୍‌ଲୁ ॥ ଘର କଲେ ଏଇ ସବୁ ଅସୁବିଧା ହବ ।

କାକଳୀ ॥ ହୁଏତ ସ୍ତ୍ରୀ ଠାରୁ ଆହୁରି ବେଶୀ ଅସୁବିଧା ।

ବାବ୍‌ଲୁ ॥ ଠିକ୍ ଅଛି । ଦେଖିବା ।

କାକଳୀ ॥ କ'ଣ ଠିକ୍ ଅଛି ? ତମେ ଜାଣିପାରୁନ, ମତେ କାହିଁକି ପିଟିଲ ?

ବାବ୍‌ଲୁ ॥ କାହିଁକି ପିଟିଲି ? କେଜାଣି ।

କାକଳୀ ॥ ( ଅନ୍ୟ ଘରେ ବେଡିଂ ବିଛାଇ ) ମୁଁ ଶୋଇଲି ।

ବାବ୍‌ଲୁ ॥ ସେ ପଟେ ତକିଆଟା ଥିବ, ନିଅ ।

କାକଳୀ ॥ ବେଡ୍ ସିଟ୍ ଦେବ ?

ବାବ୍‌ଲୁ ॥ ନା, ଥାଉ । କିଂତୁ...

କାକଳୀ ॥ କିଂତୁ କ'ଣ ?

ବାବ୍‌ଲୁ ॥ ଆମକୁ ଏମିତି ଶୋଇବା ଦେଖି କିଏ ଯଦି କ'ଣ କହେ ?

କାକଳୀ ॥ ସେ କଥା ମୁଁ ବୁଝିବି ।

ବାବ୍‌ଲୁ ॥ ଶାଳା ଲଙ୍ଗିଆ ମୋର ବଦ୍‌ନାମ କରିବ ।

କାକଳୀ ॥ ଏସ୍ସ ! ମତେ ଘରେ ରଖିବାକୁ ଯଦି ଡର ମାଡ଼ୁଚି ସଫା ସଫା କହିଦିଅ ।

ବାବ୍ଲୁ ॥ ମତେ ଡର ମାଡ଼ୁଛ ? ସେମିତି ହେଲେ ଶସ୍ତ ନେଇ ଧାଡପେନ୍ ହାତରୁ ଛଡେଇ ନ ଥାନ୍ତ ।

କାକଲୀ ॥ କିନ୍ତୁ ସେତିକବେଳେ ତୁମେ ଖୁବ୍ ଭଦ୍ର ଜଣାପଡ଼ୁଥିଲ ।

ବାବ୍ଲୁ ॥ କେଜାଣି ଶଳା ! ମତେ କଥା କହି ଆସେନା ।

କାକଲୀ ॥ ଧାଡପେନ୍ ଫେରିଲେ ଅସୁବିଧା ହବ ବୋଲି ଡରୁଚ ?

ବାବ୍ଲୁ ॥ ଡରୁଛ ? ମୁଁ ? ଆସ୍ , ପାଖକୁ ଆ'…

କାକଲୀ ॥ କାହିଁକି ?

ବାବ୍ଲୁ ॥ ଆ', ମୋ' ପାଖକୁ ଆ'…

କାକଲୀ ॥ ଶୋଇପଡ଼ । ସୁନା ପିଲାଟି ପରି ଶୋଇପଡ଼ ।

ବାବ୍ଲୁ ॥ ( ରାଗିଯାଇ ) ଶୁଣ୍ କହୁଛ ।

କାକଲୀ ॥ ( ପାଖକୁ ଆସି ଠିଆ ହୋଇଛି ) ଶୁଣିଲି । କୁହ ।

ବାବ୍ଲୁ ॥ ( ନିଜର ମୁଣ୍ଡର ବାଳ ଅଣ୍ଡାଳି ସାତ ଆଠଟା ମୁଣ୍ଡଫଟା ଦାଗ ଦେଖେଇଛି ) ଦେଖ୍ , ଦେଖୁଛୁ ଏଇଠି ?

କାକଲୀ ॥ ହୁଁ ।

ବାବ୍ଲୁ ॥ କ'ଣ ?

କାକଲୀ ॥ କ'ଣ ?

ବାବ୍ଲୁ ॥ ମୁଣ୍ଡଫଟା ଦାଗ…ଏଇଠି…ଏଇଠି…ଏଇଠି ( ଦୁଇ ଚାରିଟା ଜାଗା ଦେଖେଇଛି )

କାକଲୀ ॥ ଥାଉ ବାବା, ଥାଉ, ଅନେକ ମୁଣ୍ଡଫଟା ସାର୍ଟିଫିକେଟ ରଖିଚ ।

ବାବ୍ଲୁ ॥ ଅସଲ ସାର୍ଟିଫିକେଟଟା କିନ୍ତୁ ଫାଲ୍ତୁ । ମାଟ୍ରିକ୍ଟା ମୋ' ଦେଇ ପାଶ୍ କରି ହେଲାନି । ବସେଇଦେଲି ଗୋଟାଏ ପୁରୁଣା ଫାଷ୍ଟ ଡିଭିଜନ୍ ପିଲାକୁ । ସେ ବର୍ଷ ମୁଁ ମଧ୍ୟ ଫାଷ୍ଟ ଡିଭିଜନ୍‌ରେ ପାସ କରିଗଲି ।

କାକଲୀ ॥ ନିଜ କଥା ଭାବିଲେ ଘୃଣା ହୁଏନା ତମର ?

ବାବ୍ଲୁ ॥ ନା, ଅଭ୍ୟାସ ହୋଇଗଲାଣି । ଦିନାକେତେ ଭଲ ବି ଲାଗୁଥିଲା ।

କାକଲୀ ॥ ମୁଁ କିନ୍ତୁ ତମକୁ ଦେଖି ଭାବିନେଇଥିଲି ତମେ ଗୋଟାଏ ଗୁଣ୍ଡା ନୁହ, ଭଲ ପିଲା ।

ବାବ୍ଲୁ ॥ ମତେ କିନ୍ତୁ ତମର ଭଦ୍ର ସମାଜରେ ସମସ୍ତେ ଘୃଣା କରନ୍ତି । କାରଣ ମୁଁ ମୁଣ୍ଡରେ ଅନେକ ବାଳ ରଖିଚ, ହାତରେ ଗୋଟାଏ ବଳା, ବେକରେ ଲକେଟ୍…

ː ପର୍ଦ୍ଦା ଖସେ ː

କାକଲୀ ॥ ଦେଖେଇହେଇ କେବେ ଗୁଣ୍ଡା ସାଜ ହୁଏନା ।

ବାବ୍‌ଲୁ ॥ ନା, ମାନେ, କଥାଗୁଡ଼ା ଯେ ଝିଅମାନଙ୍କ ଆଗରେ କମିତି କୁହାଯାଏ ଟିକ୍ କହୁଆସୁନ । ଏଣିକ ଝିଅମାନଙ୍କ ସାଙ୍ଗରେ କଥାବାର୍ତ୍ତା କରିବାପାଇଁ ମତେ ନାଟକ ଉପନ୍ୟାସ ପଢ଼ିବାକୁ ପଡ଼ିବ ।

କାକଲୀ ॥ ତମର ଏତେସବୁ ଦୁର୍ବଳତା ଜାଣିଲା ପରେ ବି ମନେହେଉଚ ତମେ ଅତି ସରଳ । ଅତି ଭଲ ।

ବାବ୍‌ଲୁ ॥ ମତେ କଏ ତ ଏମିତି କୁହୁନ୍ତିନ !

କାକଲୀ ॥ ବାବ୍‌ଲୁ ! ତମେ ବୋଧହୁଏ ଗୁଣ୍ଡା ସାଜି ସବୁବେଳେ ଅନ୍ୟମାନଙ୍କଠୁ ନିଜକୁ ଅଲଗା କରିଦେବାକୁ ଚାହୁଁଚ । ଅସାଧାରଣ କରିଦେବାକୁ ଚାହୁଁଚ । ଏଇ ଯୋଉ ଇଚ୍ଛା କ୍ରମଶଃ ତମକୁ ଏମିତି କରିଦେଇଚ । ତମେ ସାଧାରଣ ମଣିଷଟିଏ ହେଇଯାଉନା ?

ବାବ୍‌ଲୁ ॥ ସାଧାରଣ ମଣିଷ ?

କାକଲୀ ॥ ହୁଁ, ଅତି ସାଧାରଣ ।

ବାବ୍‌ଲୁ ॥ ସାଧାରଣ ମଣିଷ ମାନେ କ'ଣ ?

କାକଲୀ ॥ ମାନେ, ଧୋତି ସାର୍ଟ ପିନ୍ଧିଥିବା, ସାଇକଲ ପେଲି ଅଫିସ ଯାଉଥିବା ଯେକୌଣସି ଗୋଟାଏ ଲୋକ ଭଳି ସାଧାରଣ । ଫେରିଲାବେଳେ ତାର ହାତରେ ଥିବ ଦୁଇଟି ପରିବା ବ୍ୟାଗ୍ । ସେଥିରେ ମାଛ, ମାଂସ, କଲିଜା ବା ଅଣ୍ଡା ନ ଥିବ; କୋବି, ଗାଜର, ମଟର ନ ଥିବ । ଥିବ କିଛି ଶାଗ, ମୂଳା ଆଉ ବାଇଗଣ । ଘରକୁ ଫେରିଲାବେଳକୁ ଧୂଳିରେ ଗଡେଇ ହଉଛନ୍ତି ଗୁରିଟା ଲଙ୍ଗଳା ଛୁଆ···ନାକରୁ ସିଙ୍ଗାଣି ବହିଯାଉଚ···ତମେ ସେମାନଙ୍କୁ କୋଳକୁ ନଉଚ । ସେଇ ଅପରିଷ୍କାର ଛୁଆଗୁଡ଼ାଙ୍କର ଧୂଳି ଲାଗିଥିବା ମୁହଁରେ ତମେ ଚୁମା ଦଉଚ । ମନରେ କିଛି ବିକାର ନାହିଁ । ବଡ଼ପୁଅ ଡାଣ୍ଡିରେ କଳି କରି ମୁଣ୍ଡ ଫଟେଇଚ । ସ୍ତ୍ରୀର ବାନ୍ତି ହଉଚ । ସାନପୁଅଟାକୁ ଜର । ତଥାପି ତମେ ସବୁଦିନ ଦଶଟା ହେଲେ ସାଇକଲ ପେଲି ଘୃଣା କରୁଥିବା ସେଇ ଅଫିସଟାକୁ ଯାଉଚ ।

ବାବ୍‌ଲୁ ॥ ମତେ ଭୀଷଣ ନିଦ ମାଡ଼ିଲାଣି ।

କାକଲୀ ॥ ମୁଁ ଜାଣେ, ଏମିତି କଥା ଶୁଣିଲେ ତମେ ଦୁର୍ବଳ ହେଇପଡ଼ିବ ।

॥ ଛଯ୍ୟାଳିଶ ॥

ବାବ୍‌ଲୁ ॥ ମୁଁ ଦୁର୍ବଳ ହୋଇପଡ଼ୁଛି । ହଁ, ମତେ ଦୁର୍ବଳ ଲାଗୁଛି । ମୁଁ ବର୍ତ୍ତମାନ ଟିକିଏ ଶୋଇବାକୁ ଚାହେଁ । ମୁଁ ଶୋଇବି ? ଏଁ ?

[ ଧୀରେ ଧୀରେ ଶୋଇପଡ଼ୁଛି ବାବ୍‌ଲୁ । ସ୍ୱପ୍ନ ଦେଖିଲାଭଳି ଅଭିଭୂତ ହୋଇ···କାକଳୀ ··କାକଳୀ ସେମିତି ଠିଆ ହୋଇଛି । ମଞ୍ଚ କ୍ରମଶଃ ଅନ୍ଧାର ହେବ । ସମ୍ପୂର୍ଣ୍ଣ ଅନ୍ଧାର ଭିତରୁ ଫିକା ନୀଳ ଆଲୁଅ କେବଳ ଏକାଗ୍ର ହୋଇ ପଡ଼ିବ କାକଳୀର ମୁହଁରେ । ]

କାକଳୀ ॥ ( ଫିସ୍ ଫିସ ସ୍ୱରରେ ) ଶୋଇଯାଅ···ତମର ଶୋଇଯିବା ଉଚିତ । ତା'ପରେ ସକାଳୁ ଯେତେବେଳେ ଭଲ ଲାଗିବ, ଉଠିବ । ତମେ ସକାଳୁ ଉଠିଲେ କିନ୍ତୁ ·ସାଧାରଣ ·ମଣିଷଟିଏ ହୋଇ ଉଠ । ଅସାଧାରଣ ହେବା ଇଚ୍ଛା ତମ ମନରୁ ଚାଲିଯାଉ । ତମେ କୋଟିଏ ଲୋକଙ୍କ ଭିତରୁ ଗୋଟିଏ ସହଜରେ ଚାଲ । ତମ ଜୀବନ ଆତୁର ଜନ୍ମପଦ ହେଉ···ଆତୁର···

[ କାକଳୀ ଜାଣିନି ତା' ଆଖିରେ କେତେବେଳେ ଲୁହ ଜମିଆସିଛି । ସେ ଲୁହଟା ପୋଛିଦେଇ ; ଆର ଘରକୁ ଚାଲିଯାଇଛି । କ୍ରମେ କ୍ରମେ ମଞ୍ଚର ସେଇ ଫିକା ନୀଳ ଆଲୁଅ ଦୂରେଇଯିବ । ଆବଦ୍ଧ ସଙ୍ଗୀତ ମନେ ହେବ ଏକ ମିଳେଇ ଯାଉଥିବା ସ୍ୱପ୍ନ ପରି··· ଝରି ଯାଇଥିବା ଟୋପାଏ ଲୁହ ପରି ।

ଅନ୍ଧାର । କିଛି ସମୟ ପରେ ବାହାର ଦରଜାରେ ଠକ ଠକ୍ ଶବ୍ଦ ଶୁଭିଲା । ବାବ୍‌ଲୁ କ୍ରମଶଃ ବିରକ୍ତ ହୋଇ ଉତ୍ତର ଦେବ ]

ବାହାରୁ ॥ ବାବ୍‌ଲୁ···ବାବ୍‌ଲୁ···!

ବାହାରୁ ॥ (ବିଶାଖ ସ୍ୱର) ବାବ୍‌ଲୁ ବାବୁ···ବାବ୍‌ଲୁ ବାବୁ···!

ବାବ୍‌ଲୁ ॥ କିଏ ସେ ?

ବାହାରୁ ॥ (ବିଶାଖ ସ୍ୱର) ବାବ୍‌ଲୁ ବାବୁ, ଟିକିଏ ଦୁଆରଟା ଖୋଲ ।

ବାବ୍‌ଲୁ ॥ ବାସ୍‌ଟାର୍ଡ୍‌ସ୍ ! ଏମାନେ ମତେ ଟିକିଏ ଶୁଆଇଦେବେନି ମଧ୍ୟ ।

ଃ ପଟପରିବର୍ତ୍ତନ ଃ

[ ବାବ୍‌ଲୁ ଯାଇ ଦୁଆର ଖୋଲନ୍ତି । ପ୍ରବେଶ କରନ୍ତି ତାରାପଦବାବୁ ଓ ଧନମଣି । ତାରାପଦବାବୁଙ୍କ ବୟସ ଚାଳିଶି ଟପିଗଲାଣି । ସେ ସ୍ଥାନୀୟ ରାଜନୈତିକ ନେତାଜାତୀୟ ପ୍ରାଣୀବିଶେଷ । କଥା କହିବା ଭଙ୍ଗୀରେ ରାଜନୀତିର ସମସ୍ତ ହିପୋକ୍ରାସୀ ଓ ଉପ-ଦେଶାତ୍ମକ ସ୍ୱର ମିଳିବ ଏବଂ ତା' ସଙ୍ଗେ ସଙ୍ଗେ ସମସ୍ତ ନୀଚ ଚକ୍ରାନ୍ତ ମଧ୍ୟ । ସାଙ୍ଗରେ ଥିବା ଗୋଡ଼ାଣିଆ ବ୍ୟକ୍ତିର ନାମ ଧନମଣି । ତାର ବୟସ ମଧ୍ୟ ଚାଳିଶି ପାଖାପାଖି । ବ୍ୟବହାର ଓ କଥାବାର୍ତ୍ତାର ଚାଟୁକାରିତାରେ ବିଦୂଷକ ଭଙ୍ଗୀ ]

ବାବ୍‌ଲୁ ॥ (ନମସ୍କାର ନ କରି) ଏତେ ରାତିରେ ଆପଣମାନେ ?

ତାରାପଦ ॥ କ'ଣ ବାପା, ଆମେ ତମର ସୁଖନିଦ୍ରାରେ ବାଧା ସୃଷ୍ଟି କଲୁ ?

ଧନମଣି ॥ ବାଧା ସୃଷ୍ଟି କଲେ ମଧ୍ୟ ବାବ୍‌ଲୁବାବୁ କିଛି ଭାବିବେ ନାହିଁ, ଆପଣ ତାଙ୍କ ବାପାଙ୍କର ବନ୍ଧୁ । ସେ ଦୃଷ୍ଟିରୁ ସିଏ ପୁଲକିତ ହେବେ ।

ତାରାପଦ ॥ ତମେ ଟିକିଏ ରସନା ସଂଯତ କରି କଥାବାର୍ତ୍ତା କର, ଧନମଣି !

ବାବ୍‌ଲୁ ॥ କୁହନ୍ତୁ ।

ଧନମଣି ॥ କହିବି । ବାବ୍‌ଲୁବାବୁଙ୍କୁ ଦେଖିଦେଲେ ମୋର ତଣ୍ଟିଟା ଶୁଖି-ଶୁଖି ଯାଉଛି । ଟିକିଏ ପାଣି ପିଇଥିଲେ ପୁଲକିତ ହୁଅନ୍ତି । ତଥାପି···ଗୁଡ଼···(ଭିତରକୁ ଚାହିଁ) ଭିତରେ ଆଉ କିଏ ଅଛନ୍ତି କି ?

ବାବ୍‌ଲୁ ॥ ( ସନ୍ଦେହ ଦୃଷ୍ଟିରେ ଚାହିଁତ ଧନମଣିକୁ ) କିଏ, ମାନେ ? କ'ଣ ତମେ କହିବାକୁ ଚାହୁଁଚ ?

ଧନମଣି ॥ ନାହିଁ, କିଛି ନାହିଁ···କିଏ ଆଉ ଥାଆନ୍ତା ? ଆପଣ ତ ଏକା ଲୋକ ।

ତାରାପଦ ॥ ଧନମଣି, ରସନା ସଂଯତ କର ।

ବାବ୍‌ଲୁ ॥ ( ରାଗିଯାଇ ) କ'ଣ ଶଳା ପାଲି ଖେଳୁଚ ଏଠି ?

ତାରାପଦ ॥ ବାପା ବାବ୍‌ଲୁ, ମୋ' କଥା ଶୁଣ—

ঃ ଅନ୍ଧକାର ঃ

ବାବ୍‌ଲୁ ।। କ'ଣ କହୁଛନ୍ତି ?

ତାରାପଦ ।। ତମେ ତ ବାପା ଅନେକ ଧନ ହେଲ୍ପ କରିଛନ୍ତି ଦେଇ ରହୁଚ । ଆମେ କ'ଣ ରାଜନୀତି ଛାଡ଼ିଦବୁଁ ?

ବାବ୍‌ଲୁ ।। ଆମେ ତ ଗୁଣ୍ଡା, ବଦ୍‌ମାସ; ଆପଣମାନେ ଦେଶ ଗଢ଼ୁଛନ୍ତି ।

ତାରାପଦ ।। ମୁଁ ତ ତମକୁ କେବେ ସେମିତି କହୁନାହିଁ, ବାପା !

ଧନମଣି ।। ନା, ସାର୍ ! ଆପଣ ବାବ୍‌ଲୁବାବୁଙ୍କ ସାଙ୍ଗର ବାପା···ନା···ମାନେ ବାପାଙ୍କ ସାଙ୍ଗ । ଆପଣ ତାଙ୍କୁ ଦେଖିଲା ମାତ୍ରେ ପୁଲକିତ ହୁଅନ୍ତି । ନ ହେଲେ ଏତେ ରାତିରେ ଆପଣ ଏଠିକି ଆସି ନ ଥାନ୍ତେ ।

ତାରାପଦ ।। ନା, ବାବ୍‌ଲୁ ମୋର ବିପକ୍ଷରେ ପ୍ରଚାର କରୁଚି ।

ଧନମଣି ।। ଆପଣ କ୍ଷମା କରିବେ, ସାର୍ ! ମୁଁ ଏ କଥାଟା ବିଶ୍ୱାସ କରିବିନି । ବାବ୍‌ଲୁ ବାବୁ ଟିକିଏ ପୁଲକିତ ହେଇ ହେମନ୍ତ ମହାପାତ୍ରର ପ୍ରଚାର କରିଦେଇଥାଇପାରନ୍ତି ।

ତାରାପଦ ।। ହେମନ୍ତ ମହାପାତ୍ର ଜିତିବ ଏ ଇଲେକସନ୍‌ରେ, ଜରୁ । ତା' ବୋଲି ମୁଁ କ'ଣ ମୋ' ପ୍ରଚାର କରିବିନି ?

ବାବ୍‌ଲୁ ।। ମୁଁ ହେମନ୍ତ ବାବୁଙ୍କ ପ୍ରଚାରରେ ଏ ପର୍ଯ୍ୟନ୍ତ ବାହାରିନି । ସେଇଟା ଆପଣମାନଙ୍କର ଭୁଲ୍ ଧାରଣା ।

ତାରାପଦ ।। ଦେଖ, ବାବୁ, ମୁଁ ଗୋଟାଏ ସାହାଯ୍ୟ ମାଗିବାପାଇଁ ଆସିଚି ।

ଧନମଣି ।। ଆହା···ତାରାପଦ ବାବୁ ଭଲଥା ଲୋକ···ବାବ୍‌ଲୁ ବାବୁଙ୍କର ବାପା ସମାନ ଲୋକ । ସିଏ ପୁଣି ସାହାଯ୍ୟ ମାଗିଲେ ଆଜି ! ବାବଲୁବାବୁ ପୁଲ୍‌କିତ ହେବା ଉଚିତ ।

ବାବ୍‌ଲୁ ।। ତମେ ଚୁପ୍‌କର । ବାବ୍‌ଲୁ ଗୁଣ୍ଡା ଇଲେକ୍‌ସନ୍‌ରେ ସାହାଯ୍ୟ କରିବାପାଇଁ ଏକମାତ୍ର ଲୋକ ହେଇ ଜନ୍ମ ହେଇନି ।

ତାରାପଦ ।। ମୁଁ କ'ଣ ସେ କଥା କହିଲି ?

ଧନମଣି ।। ଛି, ଛି, ସାର୍ କ'ଣ ସେ କଥା କହୁଛନ୍ତି ?

ବାବ୍‌ଲୁ ।। କାମ ପଡ଼ିଲାବେଳକୁ ଆମେ ଭଲ ପିଲା । ଆଉ ଯେତେବେଳେ କାମ ସରିଯିବ, ବାବ୍‌ଲୁ ଗୋଟାଏ ଜଘନ୍ୟ ଗୁଣ୍ଡା ବୋଲି ସମସ୍ତେ ପ୍ରମାଣିତ କରିବେ । ଚକୋଲେଟ୍ ଖାଇଦେଇ ଖୋଳଟା ଫୋପାଡ଼ି ଦେଲା ଭଳି ସମସ୍ତେ କହିବେ, ବାବ୍‌ଲୁ ଏ ସମାଜର ଗୋଟାଏ ଅନାବଶ୍ୟକ ଅପଦାର୍ଥ !

ଃ ଅଣଚାଶ ଃ

ତାମ୍ରପଦ ॥ ମୋଟେ ନୁହେଁ, ମୋଟେ ନୁହେଁ, ବାବଲୁ ! ତମକୁ ମୁଁ ପିଲବେଳୁ ଦେଖିଛି । ତମ ଭିତରେ ଗୋଟାଏ ନିଆଁ ଅଛି । ସେ ନିଆଁକୁ ନେଇ ଏ ଦେଶର ଦୁର୍ନୀତିକୁ ଜାଳିଦେଇହେବ । ତମେ ହିଁ ଏ ଦେଶରେ ଗୋଟାଏ ପୂର୍ଣ୍ଣ ବିପ୍ଳବର ମୂଳଦୁଆ ପକେଇପାରିବ ।

ଧନମଣି ॥ ଏତେଟା ଝେଙ୍କିଦେବା ଭଲ ନୁହେଁ, ସାର ! ବାବ୍ଲୁ ବାବୁ ଏ ଦେଶର ଭବିଷ୍ୟତ ବୋଲି ମନେ ମନେ ଆପଣ ପୁଲକିତ ହେଉଥିବେ, ଅଥଚ ବାବ୍ଲୁ ବାବୁ ନିଜେ ନିଜର ଉନ୍ନତି ଚାହୁଁନଥିବେ—ଏଥିରେ କ'ଣ ଦେଶ ପ୍ରଗତି କରିବ, ସାର୍ ? ପ୍ରଗତି ପାଇଁ ଆପଣମାନଙ୍କ ଭଳିଆ ମୁଣ୍ଡ ଯେମିତି ଦରକାର ବାବ୍ଲୁବାବୁଙ୍କ ଭଳି ବଳ ସେମିତି ଦରକାର ।

ବାବ୍ଲୁ ॥ କ'ଣ ଆପଣ କହୁଛନ୍ତି, ସିଧାସଳଖ କୁହନ୍ତୁ ।

ତାମ୍ରପଦ ॥ ଏଇ ଯୋଉ ଜିପ୍‌ଟା ନେଇ ଆମେ ଆସିଚୁଁ, ସେଇଟା ତମ ଡିସପୋଜାଲ୍‌ରେ ଆଜିଠୁ ରହିଲା ।

ବାବ୍ଲୁ ॥ ପେଟ୍ରୋଲ୍ ?

ତାମ୍ରପଦ ॥ ଯୋଗାଇ ଦିଆଯିବ ।

ଧନମଣି ॥ କୁହନ୍ତୁ । ଏଥର ପୁଲକିତ ହେବାର ସମୟ ଆସିଗଲା ।

ବାବ୍ଲୁ ॥ ଜିପ୍ ନେଇ କ'ଣ କରିବାକୁ ହେବ ?

ତାମ୍ରପଦ ॥ ଗୋଟାଏ ବାକ୍ସ ଅଛି ସେ ଜିପ୍ ଭିତରେ । ସେଇଟାକୁ ନେଇ ନଈକୂଳର ଡେଙ୍ଗା ଶିମୁଳି ଗଛ ପାଖରେ ରଖି ଦେଇ ଆସିବ ।

ବାବ୍ଲୁ ॥ ସେ ବାକ୍ସ ଭିତରେ କ'ଣ ଅଛି ?

ତାମ୍ରପଦ ॥ ଇଲେକ୍‌ସନ ଜିପ୍‌ରେ କ'ଣ ଥାଏ ?

ଧନମଣି ॥ ଯାହା ଥାଏ ସେୟା । ହୁଏତ କିଛି ପୋଷ୍ଟର, ନ ହେଲେ କିଛି ବାଣ୍ଟିବା ଜିନିଷ, ନ ହେଲେ କିଛି···

ତାମ୍ରପଦ ॥ ଗୋଟାଏ କିଛି···ସେଥିପାଇଁ ମୁଣ୍ଡ ଖେଳେଇବା ଦରକାର ନାହିଁ ।

ବାବ୍ଲୁ ॥ ଏଇ କାମଟା ପାଇଁ ଏତେ ରାତିରେ ଆସିଲେ ?

ତାମ୍ରପଦ ॥ ଆଉ ଗୋଟାଏ କାମ ଅଛି ।

ଧନମଣି ॥ ଆପଣ ସକାଳୁ ଗାଡ଼ି ନେଇ ରଥଗୁଡ଼ା ଘାଟି ଉପରକୁ ଚାଲିଯିବେ ।

ବାବ୍ଲୁ ॥ ସେଇଠୁ ?

ଃ ପର୍ଦ୍ଦା ଃ

ଧନମଣି ॥ ସେମାନଙ୍କର ପାର୍ଟି ଲ୍ଲପ୍ ସେଇବାଟେ ପ୍ରାୟ ଦୁଇ ଲକ୍ଷ ଟଙ୍କା ନେଇ ଆଦିବାସୀ ଗାଁମାନଙ୍କରେ ବାଣ୍ଟିବା ପାଇଁ ଯାଉଥିବ ।

ତାରାପଦ ॥ ଜିପ୍ ନଂ ୫୦୦୯ । ତମର କାମ ହେଲା ସେଇଟାକୁ ଯେକୌଣସି ମତେ ଅଟକେଇ···

ଧନମଣି ॥ ଅଟକେଇଦେବେ ଆଉ କାଠିକ ସାର୍, ଯଦି ଯାତ୍ରି ତଳକୁ ଓଲଟେଇ ଦେଇପାରବେ ଆହୁରି ପୁଲକିତ କଥା । ତା'ପରେ ଟଙ୍କାଟା ନେଇ ଫେରିଆସିବେ ।

ବାବ୍‌ଲୁ ॥ କେତେ କମିଶନ୍ ମିଳିବ ?

ତାରାପଦ ॥ ପାଞ୍ଚ ହଜାର ।

ଧନମଣି ॥ ଦେଇଦଅନ୍ତୁ, ସାର୍ !

ତାରାପଦ ॥ ରାଜି ?

ବାବ୍‌ଲୁ ॥ ଧୀପେନ୍‌କୁ କହିଲେନି ?

ତାରାପଦ ॥ ସେଇଟା ଗୋଟାଏ ଖୁନୀ । ଆଜି କୁଆଡ଼େ ସନ୍ଧ୍ୟାରେ ପୋଲିସ୍ ତାକୁ ବାନ୍ଧିନେଇଛି ।

ଧନମଣି ॥ ଟଙ୍କାଟା ଦେଇଦଅନ୍ତୁ, ସାର୍ !

ତାରାପଦ ॥ ( ଟଙ୍କା ବଣ୍ଡଲ୍‌ଟା ବାହାର କରି ) ଏଇଟା ରଖିଥାଅ ବାପା, ଦରକାର ବେଳେ କାମରେ ଆସିବ ।

ବାବ୍‌ଲୁ ॥ ଥାଉ । ମୁଁ ପରେ ନେବି । ଗାଡ଼ିଟା ତ ଅଛି ।

ଧନମଣି ॥ ବାବ୍‌ଲୁ ବାବୁ ଭଲଆ ଡ୍ରାଇଭର ଆଉ ସହରରେ ମିଳିବନି । ତାଙ୍କର ଗାଡ଼ି ଯାହା ସ୍ପିଡ୍ ଦେଖିଦେଲେ ମନ ପୁଲକିତ ହୋଇଯିବ ।

ତାରାପଦ ॥ ତା' ହେଲେ ବାପା, ମୁଁ ନିଶ୍ଚିନ୍ତ ରହିବ ?

ବାବ୍‌ଲୁ ॥ କାଲି ସନ୍ଧ୍ୟାରେ ମୁଁ କ'ଣ ହେଲା କହିବି ।

ତାରାପଦ ॥ ମୁଁ ତା' ହେଲେ ଆସୁଚି, ବାପା !

ଧନମଣି ॥ ବାକ୍‌ସଟା କୋଉଠି ରଖିଦେଇଆସିବେ ମନେରହିଲା ବାବ୍‌ଲୁ ବାବୁ ? ନଈକୂଳ ଶିମୁଳି ଗଛ ପାଖରେ ।

ବାବ୍‌ଲୁ ॥ ଠିକ୍ ମନେ ରହିଲା । ସେଇଟାକୁ ନେବାପାଇଁ ସେଠି କ'ଣ ଲୋକ ଥିବେ ?

ତାରାପଦ ॥ ସେକଥା ଆମେ ବୁଝିବୁ । ତମେ ଖାଲି ସେଠି ରଖିଦେଇ-ଆସିବ ।

[ ଚନ୍ଦନଙ୍କ ଯାଇ ବାହାରକୁ ଗଲେ । କ୍ରମଶଃ ମଞ୍ଚ ଅନ୍ଧାର । ଆଲୁଅ ଜଳିଲାବେଳକୁ ସକାଳ । ବାବ୍‌ଲୁ ଖଟ ଉପରେ ଶୋଇଛି । କାକଳୀ କପେ ଚା ନେଇ ଆସିଛି । ସଚେତନ ହେଉଛିବ୍ଧ । ବାଜ ମୁକୁଳା । ପକ୍ଷୀ-ମାନଙ୍କର ଶବ୍ଦ ]

କାକଳୀ ॥ ବାବ୍‌ଲୁ···ବାବ୍‌ଲୁ···!

ବାବ୍‌ଲୁ ॥ ( ଆଖି ମଳି ) କିଏ ?

କାକଳୀ ॥ ମୁଁ କାକଳୀ ।

ବାବ୍‌ଲୁ ॥ ଆଃ, ସକାଳ ହୋଇଗଲା ?

କାକଳୀ ॥ ଚା' ଟା ଥଣ୍ଡା ହୋଇଯିବ ।

ବାବ୍‌ଲୁ ॥ ( ଉଠି ବସି, ଚା'ଟାକୁ ଚାହିଁ ) ଓ ! ତୁ' ଶଳା ରାତିରେ ଏଇ ଘରେ ଶୋଇଥିଲୁ ?

କାକଳୀ ॥ ( ହସି ) ହଁ । ମୁଁ ଶଳା ରାତିରେ ଏଇଠି ଶୋଇଥିଲି ।

ବାବ୍‌ଲୁ ॥ ଅନେକ ଦିନ ପରେ ସକାଳୁ ଚା'ଟା ମିଳିଲା ।

କାକଳୀ ॥ ଭାଷାଗୁଡ଼ା ଟିକିଏ ସଂଶୋଧନ କର ।

ବାବ୍‌ଲୁ ॥ ମଦେ···ମାନେ · କେମିତି କେମିତି ଲାଗୁଛି ।

କାକଳୀ ॥ ଚା' ଟା ପିଅ ।

ବାବ୍‌ଲୁ ॥ ( ପିଇ ପିଇ ) ମୋର ବିଶ୍ୱାସ ହଉନି ରାତିରେ ତୁ' ଏଇଠି ଥିଲୁ ବୋଲି ।

କାକଳୀ ॥ ତମର ଏ ଯାଏଁ ନିଦ କଟିନି । ମୁହଁ ଧୋଇଆସ ।

ବାବ୍‌ଲୁ ॥ ହୁଁ ।

[ ଭିତରକୁ ଯାଇ ମୁହଁ ଧୋଇ ତଉଲିଆରେ ମୁହଁ ପୋଛି ପୋଛି ଆସିଛି । ]

କେତେଟା ବାଜିବ କେଜାଣି···

କାକଳୀ ॥ ଆଠଟା ବାଜିବ ।

ବାବ୍‌ଲୁ ॥ ଅନେକ ଡେରି ହୋଇଗଲା ।

କାକଳୀ ॥ କାଲି ରାତିରେ ମୁଁ ସ୍ୱପ୍ନ ଦେଖିଲି···

ବାବୁଲୁ ॥ ମୁଁ ମଧ । କିଛୁ ମନେ ପଡ଼ୁନି ।

[ ବାବୁଲୁ ଗୋଡ଼ହାତ ଭାଙ୍ଗି ପି. ଟି. କଲା ଭଳି ଅଳସ ଭାଙ୍ଗିଛି । ]

କାକଲୀ ॥ ଏ ସ୍ୱପ୍ନସବୁ ଏମିତି ଭୁଲ ହୋଇଯାଏ । ତମେ ଶୀଘ୍ର ଯାଅ ତ ଗାଧୋଇ ଆସିବ । ମୁଁ ଜଳଖିଆ ତିଆରି କରୁଚି ।

ବାବୁଲୁ ॥ ଯାଉଚି । ( ଯାଉ ଯାଉ ) ଘର ଛାଡ଼ିବା ପରେ ଏତେ ସକାଳୁ କପେ ଚା' ମିଳି ନ ଥିଲା ।

କାକଲୀ ॥ ଘରେ ଚା' ଭଳି ସକାଳଟା ଗରମ ।

[ ଶୁଭୁଏ ଘର ଚଟିଆଙ୍କର କଚର ମିଚର ଶବ୍ଦ । ବାବୁଲୁ ସେମାନଙ୍କୁ ଦେଖିଲି ଅନ୍ୟମନସ୍କଭାବେ ]

ବାବୁଲୁ ॥ ହଁ, ଘର ।

କାକଲୀ ॥ କୁଟାକାଠି ଆଣି ତିଆରି କଲେ ଘର ହୁଏ ।

ବାବୁଲୁ ॥ ( ଚଟିଆଗୁଡ଼ାଙ୍କ ଶବ୍ଦରେ ବିରକ୍ତ ହୋଇ ) ଶଳା କ'ଣ ହେଃ, ସକାଳୁ ସକାଳୁ ଏଇଠି କଚର ମିଚର !!

କାକଲୀ ॥ ଏଇଟା ଘର ନ ଥିଲା ବୋଲି ଅନେକ ଚଟିଆ ଏଠି ବସା ବାନ୍ଧି ଥିଲେ ।

ବାବୁଲୁ ॥ ହାରାମଜାଦା ଚଟିଆମାନେ··· !!

( ପୁଣି କଚର ମିଚର ଶବ୍ଦ ଶୁଭିଲା)

କାକଲୀ ॥ ବାଃ ! ତମେ ଘର ସଫା ରଖିବନି ଆଉ ପକ୍ଷୀମାନଙ୍କୁ ଗାଳି ଦବ, ନା ?

ବାବୁଲୁ ॥ ଆଜି ମୁଁ ଘର ସଫା କରିବି, ଏ ଶଳା ଚଟିଆମାନଙ୍କୁ ମାରିବି ।

କାକଲୀ ॥ ମାରିବ କାହିଁକି ଯେ ମିଛରେ ମିଛରେ ?

ବାବୁଲୁ ॥ ମାରିବି, ଠିକ୍ ଠିକ୍ କରି ମାରିବି, ମତେ ଚଟିଆଗୁଡ଼ାକ ଭାରି ବଢ଼ିଆ ଲାଗୁଛନ୍ତି ।

କାକଲୀ ॥ ଛି ! ଅଲକ୍ଷଣା କଥାଗୁଡ଼ାକ କହନି ।

ବାବୁଲୁ ॥ ଆରେ, ତୁ ଜାଣିନୁ । ଥରେ ଚାଖି ଦେଖ୍, ଚଟିଆ ମାଂସ କେମିତି ଲାଗୁଚି ।

କାକଲୀ ॥ ଛି, ନିଷ୍ଠୁର !

ବାବ୍ଲୁ ॥ (ଚଟିଆଗୁଡ଼ାକୁ ଗୋଡ଼ାଉ ଗୋଡ଼ାଉ) ମୁଁ ଗୁଣ୍ଡା !! (ଚଟିଆମାନଙ୍କୁ ଲକ୍ଷ୍ୟ କରି) ଦଉଡ଼ଚ ଶଳା !!

କାକଳୀ ॥ ଇସ୍···ଗଲା···ଗଲା···

ବାବ୍ଲୁ ॥ ନା, ଉଡ଼ିଗଲା । (ପୁଣି ପିଟିଚ । ଗୋଟିଏ ଚଟିଆ ପଡ଼ିଯାଇଚ) ଆଃ ଶଳା···

କାକଳୀ ॥ ଇଃ, ମା'···

ବାବ୍ଲୁ ॥ ( ଚଟିଆକୁ ମାରୁ ମାରୁ ) ଶଳା ମୋ' ସାଙ୍ଗରେ ଖେଳୁଚ !

କାକଳୀ ॥ ଛୁ ! ଗୁଡ଼ା ଦଉନା, ଘରଟା ସଫା କରିଦେଲେ ଆଉ ସେମାନେ ମୋଟେ ଆସିବେନି ।

ବାବ୍ଲୁ ॥ ଆଜି କନ୍ଟୁ···ଦ୍ଵେଃ···ଶଃ···

କାକଳୀ ॥ ତମେ ଖୁବ୍ ଝାଳେଇଯାଇଚ ।

ବାବ୍ଲୁ ॥ ଅନେକ ଚଟିଆ ଥିଲେ । (ନିଜ ଦେହକୁ ଗୁହିଁ) ଭଲ exercise ହଉଚ ।

କାକଳୀ ॥ କାହିଁକି ସେମିତି ପାଗଳଙ୍କ ଭଳି ହଉଚ, କହିଲ ?

[ କାକଳୀ ପଛପଟ ଘରେ କଳଖିଆ ତିଆରି କରୁଥିବା ଦେଖାଯାଉଥିବ, ଆଉ ଗୋଟିଏ ଚଟିଆ ମରି ପଡ଼ିଥିବ···]

ବାବ୍ଲୁ ॥ ମର୍ ଶଳା !!

କାକଳୀ ॥ ଆହା···ଚୁ···ଚୁ···ଛୁ ! କ'ଣ ଇଏ ହଉଚ ଯେ ?

ବାବ୍ଲୁ ॥ ଏ ଦ'ଟାକୁ ଭଜି ଦେ ।

କାକଳୀ ॥ (ବାନ୍ତି କଲାଭଳି ମୁହଁ କରି) ଛୁ, କେମିତିକା ମଣିଷ ମ ତମେ !

ବାବ୍ଲୁ ॥ ବଢ଼ିଆ ଲାଗିବ, ଓ୍ୱାଲ୍ ଡଫର ଝିଟିପିଟିଠାରୁ ଅନେକ ଭଲ ।

କାକଳୀ ॥ ଫୋପାଡ଼, ସେଇଟାକୁ ବାହାରେ ଫୋପାଡ଼ିଆସ, ଗୁଣ୍ଡା କୋଉଠିକାର ।

ବାବ୍ଲୁ ॥ (ହଠାତ୍) କ'ଣ କହିଲୁ···ଆଉ ଥରେ କହିଲୁ ଦେଖି !

କାକଳୀ ॥ ଗୁଣ୍ଡା କୋଉଠିକାର !!

ବାବ୍ଲୁ ॥ (ସ୍ଥିର ଦୃଷ୍ଟିରେ ଗୁହିଁଚ ଯେମିତି କାକଳୀକୁ ଗିଳି ପକେଇବ)

କାକଳୀ ॥ (ସେମିତି ଶାସନ କଲା ପରି) କ'ଣ ଅନେଇଛ ମତେ ? ଫୋପାଡ଼ି-
ଦେଇ ଆସ ।

ବାବ୍‌ଲୁ ॥ ହଁ, ମୁଁ ଗୁଣ୍ଡା, ପୃଥିବୀରେ ଆଉ ଗଲେ ସମସ୍ତେ ଭଲ । କ'ଣ
ହେଲା ସେଇଠୁ ?

[ ଘରରେ ଚଟିଆଁଟିକୁ ଧରି ବାହାରେ
ଫୋପାଡ଼ି ଦେଇଛି ]

କାକଳୀ ॥ ଖୁମ୍ବ ଆସାମୀ, ସମସ୍ତ ପଡ଼ିଲେ ମଣିଷକୁ ବି ଏମିତି ମାରି
ପକେଇବ ।

ବାବ୍‌ଲୁ ॥ ଉଡ଼େଇବି, ଉଡ଼େଇବି···ରକ୍ତ ଶଳା···

କାକଳୀ ॥ ହଉ, ସକାଳୁ ସକାଳୁ ଆଉ ଉଡ଼ ଉଡ଼ି କରନା । ଶୀଘ୍ର ଗାଧୋଇ-
ଆସିବ ଯାଅ, ଜଳଖିଆ ତିଆରି ହେଲାଣି ।

ବାବ୍‌ଲୁ ॥ ଏସ୍ଟୁ ! ସେ ହାକମୀ ଦେଖାଇଲେ କିଛି ଶୁଣିବନି କହୁଛି । ଧୀରେ
ସୁସ୍ଥେ କହ, ମୁଁ ଯିବି···

( ତଉଲିଆ ଧରି ପଛ ଘର ଦେଇ ବାଡ଼ିପଟେ ଅଦୃଶ୍ୟ )

କାକଳୀ ॥ (ମନକୁ ମନ ହସି) ଗୁଣ୍ଡା, ନାହିଁ···? ତମକୁ ସବୁ ଏମିତି
ଶାସନ ଦରକାର । ତା'ହେଲେ ଯାଇ ସୁନା ପିଲା ହବ ।

[ କାକଳୀ ଭିତରଘରେ ସ୍ଟୋଭ୍‌ରେ
ବ୍ୟସ୍ତ ଥିଲାବେଳେ ବାହାରେ ଦୁଇଜଣ
ଭଦ୍ରଲୋକ ଦେଖାଦେଲେ : ତାରାପଦବାବୁ
ଓ ତାଙ୍କର ଗୋଡ଼ାଣିଆ ଧନମଣି । ଧନମଣି
ବାବ୍‌ଲୁକୁ ଖୁବ୍ ଡରେ । ଏଣୁ ଭିତରକୁ ଯିବା
ପାଇଁ ମଙ୍ଗ ନ ଥାଏ । ତାରାପଦ ତାକୁ ଠେଲି
ପେଲି ପଠାଇବାରେ ବ୍ୟସ୍ତ ]

ତାରାପଦ ॥ (ଧନମଣିକୁ ଆସ୍ତେ ଆସ୍ତେ) ଯାଅ···

ଧନମଣି ॥ ବାବ୍‌ଲୁ ଯଦି ଭିତରେ ଥିବ ?

ତାରାପଦ ॥ କିଛି କରିବନି, ତମେ ପ୍ରଥମେ ଦେଖିଆସ ଚିଠିଟା ଅଛି କି ନାହିଁ ।

ଧନମଣି ॥ ମୋ' ଚିଠିଟା···

ତାର୍କପଦ ।। କହ୍ଣ ହବନ ।

ଧନମଣି ।। ପୁଲକିତ ହେଇଯିବ, ସାର୍ !

ତାର୍କପଦ ।। ଆରେ, ଯାଅ, ମୁଁ ଅଚ୍ଛୁ, କହୁ ହବନ ।

ଧନମଣି ।। ନାହିଁ ସାର୍ । ଆପଣ ଜାଣିନାହାନ୍ତି, ଶଳା ବାବ୍‌ଲୁ ଗୁଣ୍ଡା ଛୁରି ଭୁଷିଦବ ।

ତାର୍କପଦ ।। ଓଃ ! ବେଶୀ ପାଟି କରନ, ଯାଅ···ଡାକ ।

ଧନମଣି ।। (ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କରି) ବାବ୍‌ଲୁବାବୁ···!! (ପୁଣି ତାର ସ୍ୱରଟାକୁ ଆହୁରି ମିଠା କରି) ବାବ୍‌ଲୁବାବୁ···!!

କାକଲୀ ।। ( ଭିତରୁ ) କିଏ ?

ଧନମଣି ।। (ଖୁସି ହେଇଗଲା) ଅଛୁ ସାର୍, ଚଢ଼େଇଆ ଅଛୁ ।

ତାର୍କପଦ ।। ଭିତରକୁ ଯାଅ···

କାକଲୀ ।। କିଏ ?

ଧନମଣି ।। ଆଉ କିଏ ହୁଅନ୍ତା ? (ତାର୍କପଦଙ୍କୁ) ଆପଣ ପାଟି କରନ୍ତୁନି ସାର୍, ବାହାରେ ଠିଆ ହେଇ ପୁଲକିତ ହୁଅନ୍ତୁ ।

କାକଲୀ ।। (ଧନମଣିକୁ ଦେଖି ଆତଙ୍କିତ ହୋଇ) ତମେ···ତମେ ଏଠି !

ଧନମଣି ।। ମୁ ତ ସେଇକଥା ଆପଣଙ୍କୁ ପଚାରୁଚି ମାଡାମ୍···ଆପଣ ଏଠିକି କେମିତି ଆସିଲେ ?

କାକଲୀ ।। ମୋ' ଇଚ୍ଛା ହେଲା ମୁଁ ଆସିଲି, ତମର ସେଥିରେ କ'ଣ ଗଲା ?

ଧନମଣି ।। ଏଁ ? କ'ଣ ଗଲା ? ଆପଣ ଏଠିକି ଆସିଲେ ବୋଲି କାଲି ରାତିରୁ ତାର୍କପଦବାବୁ ପୁଲକିତ ହେବା ଛାଡ଼ିଦେଲେ ।

କାକଲୀ ।। ବାଜେ କଥା ବନ୍ଦ କର । କୁହ କ'ଣ ଚାହୁଁ ତମେ ?

ଧନମଣି ।। ଆପଣଙ୍କୁ ଫେରେଇ ନେବା ପାଇଁ ଆସିଚୁ ।

କାକଲୀ ।। କୋଉଠିକି ଫେରେଇନବ ? ପୁଣି ସେଇ ନର୍କ ଭିତରକୁ ? ପୁଣି ପାପେନ୍‌କୁ ପଠେଇ ମତେ ଖୁନ୍ କରିବା ପାଇଁ ? ମୁଁ ଯିବନି ।

ଧନମଣି ।। ଦେଖନ୍ତୁ, କ'ଣ ଗୋଟେ ଘଟିଗଲା ବୋଲି ଆପଣ ଏମିତି ରାଗିଲେ ହବ ? ଏମିତି କ'ଣ ହଉନ ? ତା'ଛଡ଼ା ପାପେନ୍ ଏମିତି ଗେଲ ହଉଥିଲା ନା···ସତରେ କ'ଣ ଏଇ ଦେହରେ ଛୁରି ଭୁଷିବା ପାଇଁ କାହା ହାତ ଯିବ ?

ଃ ଛପନ ଃ

କାକଳୀ ॥ ଚୁପ୍ କର । ନୀଚ ଲୋକଗୁଡ଼ାକ ।

ଧନମଣି ॥ ଓହୋ, ମାଡାମ ! ଆପଣ ଟିକିଏ ଧୂଳକାନ୍ତ ହୁଅନ୍ତୁ । ରାଗିବାଟା ଆଦୌ ଭଲ ଗୁଣ ନୁହେଁ । ତା'ଛଡ଼ା ଆପଣଙ୍କୁ ନେବା ପାଇଁ ତାରାପଦବାବୁ ଖୋଦ୍ ଆସିଛନ୍ତି ।

କାକଳୀ ॥ ସେ କାହିଁକି ଆସିଛନ୍ତି ?

ଧନମଣି ॥ ବାପ ସମାନ ଲୋକ, ଶୁଣିଲେ, ଧୀପେନ୍ ରାଗିଯାଇ କ'ଣ ଗୋଟାଏ କାଣ୍ଡ କରିଦେଇଛୁ । ତା'ପରେ ରାତିସାରା ଶୋଇପାରିଲେନି । କଲ୍‌ଜାଟା ଝାଲ୍ ଧପ୍ ଧପ୍ ହେଲା । ଅଧରାତିରେ ଏଠିକି ଆସିଥିଲେ । ଆପଣଙ୍କୁ ଠାବ କରି ଯାଇଛନ୍ତି ।

କାକଳୀ ॥ ମତେ କେମିତି ଦେଖିଲେ ?

ଧନମଣି ॥ ଆପଣଙ୍କ ଶାଢ଼ିଟାକୁ ଦେଖି ଚହ୍ନି ପକେଇଲେ । ତା'ପରେ ଧୂଳକାନ୍ତ ।

କାକଳୀ ॥ ତାଙ୍କୁ କହିଦିଅ, ଏଠୁ ଯିବା ମୋ' ପକ୍ଷରେ ସମ୍ଭବପର ନୁହେଁ । ଯଦି ବା ଯାଏ ଆଉ ସେଠିକି ନୁହେଁ ।

ତାରାପଦ ॥ (ପ୍ରବେଶ କରି) ମୁଁ ଜାଣେ, ଧୀପେନ୍‌ର ବ୍ୟବହାର ଭାରି ଅମାନୁଷିକ । ତଥାପି ତୋ' ଉପରେ ମୋର ଜଥବା ହାରିବା ନିର୍ଭର କରେ, କାକଳୀ ! ତୋରି ଘରେ ସବୁ ରାଜନୈତିକ ଚର୍ଚ୍ଚା । ତୋରି ସାମନାରେ ସବୁ ପ୍ରୋଗ୍ରାମ । ତୁ' ଚାଲିଆସିଲେ ମା' ସବୁ ବାନ୍‌ଚାଲ ହୋଇଯିବ ।

ଧନମଣି ॥ କାକଳୀ ମାଡାମ ସବୁ କଥା ଜାଣିପାରୁଛନ୍ତି । କାହିଁକି ଜାଣିବେନି···ଏଇଟା କ'ଣ କମ୍ ଧୂଳକାନ୍ତ କଥା ?

ତାରାପଦ ॥ ତମେ ଚୁପ୍ କର । ମା', ଚାଲ, ଆମେ ଫେରିଯିବା । ମୁଁ ଏଣିକି ଦେଖିବି ଧୀପେନ୍ ଯେମିତି ତୋର କୌଣସି ଅସୁବିଧା ନ କରେ ।

କାକଳୀ ॥ ସେଇଟ ଗୋଟାଏ ପଶୁ ।

ତାରାପଦ ॥ ତୁ ଯାହା ପାଖରେ ଆଶ୍ରୟ ନେଇଚୁ ସେଇଟା ତ ଆଉ ଗୋଟାଏ ଜାନୁଆର । ଗୋଟାଏ ଅସାମାଜିକ ଲୋକ ପାଖରେ ଏମିତି ଗୋଟାଏ ବସ୍ତିରେ ଏକଲା ରହିଲେ ତୋର ଆଉ ସମ୍ମାନ ରହିବଟି ?

କାକଳୀ ॥ ଗୋଟାଏ ରାତି ଭିତରେ ମୁଁ ଯାହା ଦେଖିଚି ଆପଣମାନଙ୍କଠୁ ସିଏ ହଜାର ଗୁଣରେ ଭଲ ।

ଧନମଣି ॥ ଯା' ହଉ, ପୁଲକନ୍ତ କଥା । ଗୋଟାଏ ଘଣ୍ଟ ଭିତରେ ମା'ଡାମ ବାବ୍‌ଲୁବ ସବୁ ଦେଖି ସାଉଲେଣି । ଚର୍ଣ୍ଣି ସାରଲେଣି । ପୂରପୂର ନଜର ଭରସାଉଲେଣି ।

ଚାଗ୍ରପଦ ॥ ତମେ ଚୁପ୍‌କର । ଙ୍କାକଳୀ ! ମୁଁ ଯୋଉ ଏଇ କଥାଟ କହୁଲ୍‌···
ମାନେ, ବାବ୍‌ଲୁ ଗୁଣ୍ଡା ଜଣେ ଭଲ ଲୋକ; ମୁଁ ମାନୁଚ । ଟୋକାଟାର ବେଇମାନ ନାହିଁ । କନ୍ତୁ ତୁ ଏଠି କେତେଦନ ଚଳବୁ ?

କାକଳୀ ॥ ବେଶ୍ ଚଳବ । ଖୁସିରେ ଚଳବ ।

ଚାଗ୍ରପଦ ॥ ପୁଣି ଥରେ ଚନ୍ତା କର । ବାବ୍‌ଲୁ ଖୁନୀ ଆସାମୀ, ଡକେଇତ । ପୋଲିସ ତାକୁ ଖୋଜୁଚ ।

କାକଳୀ ॥ ମିଛ କଥା, ବାବ୍‌ଲୁ ଖୁବ୍ ଭଲ ।

ଚାଗ୍ରପଦ ॥ ମଣିଷ ଚର୍ଣ୍ଣିବା ଏତେ ସହଜ ନୁହେ, ମ ପଚଶ ବର୍ଷ ହେଲ ଗ୍ରଜମାଥ କର ମୁଁ ସ୍ବା ଭଲ ହଜାରେ ଗୁଣ୍ଡାଙ୍କୁ ଦେଖିଲିଣି ।

ଧନମଣି ॥ କ କଥା ହେ ! କଏ ନ ଜାଣିଚ ଆପଣଙ୍କୁ ?

ଚାଗ୍ରପଦ ॥ ବାବ୍‌ଲୁକୁ ମୁଁ ଆଜ ଇଲେକ୍‌ସନ କାମରେ ପଠେଇଦଉଚ । ସେଇ ମଉକାରେ ତୁ ଏଠୁ ଖସି ଗ୍ଲଆ'···

କାକଳୀ ॥ ଆପଣମାନେ ହିଁ ତାକୁ ଗୁଣ୍ଡା କରଦେଇଛନ୍ତ । ଆପଣଙ୍କର ଗ୍ରଜନୀତବାଲ ହିଁ ତାକୁ ନଷ୍ଟ କରପକେଇଛନ୍ତ ।

ଧନମଣି ॥ ବୁଝିଗଲ, କଥାଟା ବୁଝିଗଲ । ବାବଲୁ କଷ୍ଟସ୍ ଗୋଟାଏ କ'ଣ କରପକେଇଚ । ନ ହେଲେ ଏମିଥ ଘଣ୍ଟକ ଭିତରେ ପୁଲକନ୍ତ ହେବା ସହଜ କଥା ନୁହେ ।

କାକଳୀ ॥ ସେ ଯା'ହଉ, ବାବ୍‌ଲୁ ଇଲେକ୍‌ସନ କାମରେ ଯାଇପାରବ ନାହିଁ । ମୁଁ ତାକୁ ମନା କରଦେବ ।

ଚାଗ୍ରପଦ ॥ (ବିରକ୍ତ ହୋଇ) କଥାଟା ଆଦୌ ଭଲ ହବ ନାହିଁ ।

କାକଳୀ ॥ ମତେ ଆପଣ ବ୍ଲାକ୍ ମେଲ୍ କରବାପାଇଁ ଚେଷ୍ଟା କରୁଛନ୍ତ । ବାବ୍‌ଲୁକୁ ମଧ୍ୟ ।

ଚାଗ୍ରପଦ ॥ ସେସବୁ କଥା ଶୁଣିବାକୁ ମୁଁ ଗ୍ଲହେଁନା । ତତେ ଯିବାକୁ ହବ ।

କାକଳୀ ॥ ମତେ ଧମକ ଦଉଛନ୍ତ ?

ଚାଗ୍ରପଦ ॥ ଏ ପର୍ଯ୍ୟନ୍ତ ଅନୁରୋଧ କରୁଚ ।

କାକଳୀ ॥ କ'ଣ ଆପଣଙ୍କର ମତଲବ ? ମତେ ଶେଷରେ ଗୋଟାଏ ବେଶ୍ୟା କର ଛାଡ଼ବେ ନା କ'ଣ ?

ତାରାପଦ ॥ ତୁ ଯାହା ହେଲେ ବି ମୋର ସ୍ୱାର୍ଥରେ କିଛି ଯାଏ ଆସେ ନା । ତୁ ଆମ ପାର୍ଟିର ଅନେକ ସିକ୍ରେଟ୍ ଜାଣିଚୁ ଏବଂ ଏଗୁଡ଼ା ଯଦି ଅନ୍ୟ କାହା ଆଗରେ ପ୍ରକାଶ କରୁ ତା'ହେଲେ କ'ଣ ହବ ବୁଝୁଚୁ ତ ?

କାକଳୀ ॥ ମୁଁ କିଛି ଜାଣେନା ।

ଧନମଣି ॥ ନାଃ ! ମାଡାମ କିଛି ଜାଣିପାରୁନାହାନ୍ତି । ମାଡାମ ଗୋଟେ ଝିଅ ।

ତାରାପଦ ॥ ଧନମଣି, ତମେ ବାହାରେ ବସ । କାଲେ ବାବ୍‌ଲୁ ଆସିଯିବ ।

ଧନମଣି ॥ ସାର୍ ! ଠିକ୍ କଥା କହୁଛନ୍ତି । ମୁଁ ବାହାରେ ବସିଚି ।

( ବାହାରକୁ ଗଲା )

ତାରାପଦ ॥ କହୁ ଯିବୁ କି ନାହିଁ ? ମୁଁ ପୁଣି ଥରେ ସତର୍କ କରେଇ ଦଉଚି, ଏଠି ବାବ୍‌ଲୁ ପାଖରେ ତୋର ଜୀବନ ନିରାପଦ ନୁହେଁ ।

କାକଳୀ ॥ କିନ୍ତୁ ସେଠିକି ଗଲେ ପୁଣି ମୋ' ଉପରେ ଅତ୍ୟାଚାର ଆରମ୍ଭ ହେଇଯିବ । ରାତିରେ ଦୀପେନ୍ ଆସି କବାଟ ବାଡ଼େଇବ । ମଦ ପିଇ ମୋ' ଘରେ ବାନ୍ତି କରିବ । ହାତବୋମା, ପିସ୍ତଲ ଆଉ ଷ୍ଟେନ୍‌ଗନ୍ ରଖିବ ।

ତାରାପଦ ॥ ଏଠି କ'ଣ ବାବଲୁ ପାଖରେ ତୁ ନିରାପଦରେ ରହିବୁ ଭାବୁଚୁ ? ଦୀପେନ୍ ନିଶ୍ଚୟ ଜାଣିବ । ପ୍ରତିଶୋଧ ନବ । ତା' ଅପେକ୍ଷା ତୁ ବରଂ ମୋର ସେଇ ପୁରୁଣା ଘରକୁ ଚାଲିଆ । ସେଠି ମୋ' ପାଖରେ ତୁ ଅନେକ ନିରାପଦରେ ରହିବୁ । ମୁଁ ଦୀପେନ୍‌କୁ ବୁଝେଇଦେଲେ ସେ ବୁଝିଯିବ ।

କାକଳୀ ॥ ପ୍ଲିଜ୍...ମତେ ପୁଣି ସେଇ ଜଘନ୍ୟ ପରିବେଶ ଭିତରକୁ ଟାଣନ୍ତୁନି । ମୁଁ ସେଠି ଶ୍ୱାସରୁଦ୍ଧ ହେଇଯିବି; ଅଣନିଃଶ୍ୱାସୀ ହେଇଯିବି ।

ତାରାପଦ ॥ ତତେ ଆସିବାକୁ ପଡ଼ିବ ।

କାକଳୀ ॥ ମୁଁ ଯାଇପାରିବିନି ।

ତାରାପଦ ॥ ବେଶ୍, ମୁଁ ତା'ହେଲେ ପୋଲିସ୍‌ରେ ଖବର ଦେବି । ତୋ' ଘର ଯାଞ୍ଚ ହବ । ସେ ଭିତରୁ ଯେତେବେଳେ ଅନେକ ଗୁପ୍ତ ମନ୍ତ୍ରଣାର କାଗଜ ବାହାରିବ ତୁ ଗୋଟାଏ ରାଜନୈତିକ ହତ୍ୟା ମକଦ୍ଦମାରେ ସଂଶ୍ଲିଷ୍ଟ ହେଇପଡ଼ିବୁ ।

କାକଳୀ ॥ ରାଜନୈତିକ ହତ୍ୟା ? କ'ଣ ଆପଣ କହୁଛନ୍ତି ?

ତାରାପଦ ॥ ହେମନ୍ତ ମହାପାତ୍ର ଖୁନ୍ ହେଇଯାଇଚି ।

କାକଳୀ ॥ କେବେ ?

ତାରାପଦ ॥ କାଲି ସନ୍ଧ୍ୟାରେ । ଏବଂ ବାବଲୁକୁ ସେଇ କେସ୍‌ରେ ଜଡ଼ିତ କରେଇ ଦିଆଯିବ । ତା' ସନ୍ଧ୍ୟତ ତତେ ମଧ୍ୟ ।

କାକଳୀ ॥ ଆପଣ ମତେ ଏତେ ଭଲ ପାଉଥିଲେ; ଶେଷରେ ଏଯ୍ଯା କରିବେ ?

ତାରାପଦ ॥ ବର୍ତ୍ତମାନ ମଧ୍ୟ ମୁଁ ତତେ ଭଲପାଏ । ମୁଁ ତୋର ମଙ୍ଗଳ ଚାହେଁ । ତୋ' ଆଗରେ ଦୁଇଟା ବାଟ । ଗୋଟାଏ ସୁଖ ଆଉ ଶାନ୍ତିର । ଅନ୍ୟଟି ଅନ୍ଧାର ଆନ୍ଧ ଜେଲ୍‌ର ।

କାକଳୀ ॥ ଏଠୁ ଗଲେ ଯଦି ବାବ୍‌ଲୁ ପ୍ରତିଶୋଧ ନିଏ ?

ତାରାପଦ ॥ ତତେ କୋଉଠି ଗୋଟାଏ ଲୁଚେଇ ଦିଆଯିବ କିଛିଦିନ ।

କାକଳୀ ॥ କୋଉଠି ?

ତାରାପଦ ॥ ସେ କଥା ଏଠୁ ଗଲାପରେ ଜାଣିବୁ । କ'ଣ ? ଖୁସି ?

ଧନମଣି ॥ (ପ୍ରବେଶ କରି) ସାର୍‌ ! ଆଉ ବେଶୀ ବିଳମ୍ବ କରନ୍ତୁ ନାହିଁ । ସମୟ ହୋଇଗଲା ।

ତାରାପଦ ॥ ବାବ୍‌ଲୁ ?

ଧନମଣି ॥ ଆସୁଛି । ଚାଲନ୍ତୁ ଶୀଘ୍ର ପଳେଇଯିବା ।

ତାରାପଦ ॥ କାକଳୀ, ହାତରେ ଆଉ ଖୁବ୍ କମ୍ ସମୟ ରହିଲା । ବାବ୍‌ଲୁକୁ ବର୍ତ୍ତମାନ ଇଲେକ୍‌ସନ୍ ଡ୍ୟୁଟିରେ ପଠେଇ ଦିଆହବ । ତା' ପାଇଁ ଗାଡ଼ି ଆଉ ଟଙ୍କାର ବନ୍ଦୋବସ୍ତ କରିଦିଆଯାଇଛି ।

କାକଳୀ ॥ ଇସ୍ ! ମୋ' ପାଇଁ ସାଙ୍ଘାତିକ ଗୋଟାଏ ଚକ୍ରାନ୍ତ କରୁଛନ୍ତି ଆପଣ ?

ତାରାପଦ ॥ କାରଣ ତତେ ମୁଁ ହାତଛଡ଼ା କରିବାକୁ ଚାହେଁନା ।

କାକଳୀ ॥ ଆପଣ ନିଷ୍ଠୁର । ଅମଣିଷ । ଆପଣଙ୍କ ଲାଗି ମୁଁ ଏଇ ଅବସ୍ଥାରେ ପହଞ୍ଚିଛି । ତଥାପି ଆପଣଙ୍କର ଦୟା ହେଉନି ?

ଧନମଣି ॥ ଓଃ ! ଜଲ୍‌ଦି ବାହାରନ୍ତୁ, ସାର୍ !

ତାରାପଦ ॥ କ'ଣ ଠିକ୍ କଲୁ ?

ଧନମଣି ॥ ସାର୍, ଜଲଦି ।

କାକଳୀ ॥ ନା, ମୁଁ ଯାଇପାରିବିନି ।

ତାରାପଦ ॥ ତା'ହେଲେ ଫଳାଫଳ ପାଇଁ ଦାୟୀ ରହିବୁ ।

ଧନମଣି ॥ ସାର୍ ! ଆସିଗଲା ।

ତାରାପଦ ॥ ଓଃ ! କି ନର୍ଭସ ଲୋକ କହିଲୋ ତମେ ?

ଧନମଣି ॥ ଇଆଡ଼େ ପିଠିଟା କ୍ୟାଲେଣ୍ଡର୍ ହୋଇଯିବ ଯେ···

ଃ ଷାଠିଏ ଃ

ଭାଗ୍ୟପଦ ॥ ଚପ୍‌କର । ( କାକଲୀକୁ ) ଦେଖ୍ , ତୁ ଚିନ୍ତା କରନୁ ମା' ! ଆଜି ସନ୍ଧ୍ୟା ପୂଜା ମତେ ଜଣେଇବୁ ।

[ ଦୁହେଁ ଚାଲିଗଲେ ଦ୍ରୁତ ପଦକ୍ଷେପରେ । କାକଲୀ ସେମିତି ଶୂନ୍ୟ ଆଖିରେ ସେଇଆଡ଼େ ଚାହିଁ-ରହିଚି । ବାବ୍‌ଲୁ ଗାଧୋଇ ଫେରଚି ବାଡ଼ପଟ ରାସ୍ତାରେ । କାକଲୀର ମୁହଁରେ ପୁଣି ଥରେ ଆଶାର ଆଲୁଅ ଫୁଟିଉଠିଚି ]

ବାବ୍‌ଲୁ ॥ ଜଲ୍‌ଦ···ଦେ, କ'ଣ ଜଳଖିଆ ହେଇଚି ଟିକାଏ ଦେଲୁ, ମୁଁ ଖାଇଦେଇ ଯାଏ···

କାକଲୀ ॥ ହୁଁ···ତମେ ଏତେ ଡେରି କଲ ଯେ ?

ବାବ୍‌ଲୁ ॥ ଡେରି ଆଉ କ'ଣ ?

କାକଲୀ ॥ ସ୍ନା' ଭିତରେ ମତେ ଯଦି କିଏ ନେଇଯାଇଥାନ୍ତା ?

ବାବ୍‌ଲୁ ॥ ହେଃ ! ଚୋର ମନେ ରଖିବା ଉଚିତ ଏଇଟା ବାବ୍‌ଲୁର ଘର । ଆଗ ଯାହା କିଛି ଗୋଟାଏ···

କାକଲୀ ॥ ଚୁଲିଟା ଲିଭିଗଲାଣି । ପରଟା ଥଣ୍ଡା ହେଇଯାଇଚି ।

ବାବ୍‌ଲୁ ॥ ଯାହା କିଛି ଗୋଟାଏ ଦେ' । ଭୋକ ଭୋକ ।

କାକଲୀ ॥ ନା, ମୁଢ଼ି ପିଆଜ ଦେବି ?

ବାବଲୁ ॥ ଚଳିବ ।

କାକଲୀ ॥ ସୋରିଷ ତେଲ ଦେବି, ଚଳିବ ?

ବାବଲୁ ॥ ଚଳିବ ।

କାକଲୀ ॥ ଆରେ ସତେ ତ ! ସୋରିଷ ତେଲ ଭେଜାଲ । ସେମିତି ଖାଇଦିଅ ।

ବାବ୍‌ଲୁ ॥ ଓଃ ! ଦେଲୁ ବାବା ଗୋଟାଏ କିଛି···

କାକଲୀ ॥ କ'ଣ ଦେବି ? ପରଟା ନା ମୁଢ଼ି ?

ବାବ୍‌ଲୁ ॥ ଦେବି ଗୋଟାଏ ଚାପୁଡ଼ା ଯେ···ଗାଲଟା ଫାଟିଯିବ ।

କାକଲୀ ॥ ଫାଟୁ । ତା' ଆଗରୁ ବଜାର ଯାଇ କିଛି ଗେରୁଆ ଲୁଗା ଆଣ ।

ବାବ୍‌ଲୁ ॥ କାହିଁକି ?

କାକଲୀ ॥ ତାକୁ ପିନ୍ଧି ହିମାଳୟକୁ ଚାଲିଯିବ ।

ବାବ୍‌ଲୁ ॥ ମଜା ଲାଗିଚି ?

କାକଲୀ ॥ ( ହସି ହସି ) କେମିତିକା ମଣିଷ କିଓ ତମେ ? ଖାଇବାର ଗୋଟାଏ କିଛି ଚଏସ୍ ନାହିଁ ? ଇଏ ପୁଣି କ'ଣ ନା ଗୋଟାଏ

ଗୁଣ୍ଡା ! ସ୍କାଙ୍କୁ ପୁଣି ଦେଖିଲେ କୁଆଡ଼େ ତର୍ଭିଣୀ ଗାଇ ବାଛୁ ଛୁଡ଼ିଦଅନ୍ତି !!

ବାବ୍‌ଲୁ ॥ ( ହସିଲା···ଖୁବ୍ ଜୋର୍‌ରେ ହସିଲ )

କାକଳୀ ॥ ( ଜଳଖିଆ ରଖୁ ରଖୁ ) ହସୁଚ କ'ଣ ? ହସୁଚ କ'ଣ ମ ? ଗୁଣ୍ଡାମାନେ କ'ଣ ହସନ୍ତି ?

ବାବ୍‌ଲୁ ॥ ଆଚ୍ଛା ମୁସ୍କିଲ କଥା ! ହସିବା କ'ଣ ମନା ?

କାକଳୀ ॥ ସିଏ ଯାହା ହଉ, ମୁଁ ତମକୁ ଏତେ ସମୟ ପରେ ପ୍ରଥମ ଥର ହସିବା ଦେଖିଲି । ଆଉ ହସିବା ପରେ ତମେ ଆଦୌ ଗୁଣ୍ଡା ଭଳି ଦିଶୁନାହଁ ।

ବାବ୍‌ଲୁ ॥ ଆଚ୍ଛା ?

କାକଳୀ ॥ କାଲି ରାତିରେ ମୁଁ ସ୍ୱପ୍ନ ଦେଖିଲି ତମେ ଗୋଟାଏ ସାଧାରଣ ମଣିଷ ହେଇଯାଇଚ ।

ବାବ୍‌ଲୁ ॥ ସାଧାରଣ ମଣିଷ ମାନେ ? ଭଦ୍ରଲୋକ ?

କାକଳୀ ॥ ହଁ । ତମେ ବାହା ହେଇଚ···ଘରସଂସାର କରୁଚ···

ବାବ୍‌ଲୁ ॥ ଧେତ୍ ଶଳା, ଝିଅଗୁଡ଼ାଙ୍କର ଆଉ କିଛି କାମ ନାହିଁ ।

( କିଛି ସମୟର ନୀରବତା )

କାକଳୀ ॥ ବାବ୍‌ଲୁ !

ବାବ୍‌ଲୁ ॥ ହୁଁ ।

କାକଳୀ ॥ ତମେ ଆଜି କୁଆଡ଼େ ଯିବ ?

ବାବ୍‌ଲୁ ॥ ଗୁଣ୍ଡାଟେ ଆଉ ଯାଆନ୍ତା କୁଆଡ଼େ ? ସେଇମିତି କିଛି ଗୋଟାଏ ଧନ୍ଦା···

କାକଳୀ ॥ କାଲି ରାତିରେ ତାରାପଦ ଆଉ ହରମଣି ଆସିଥିଲେ ?

ବାବ୍‌ଲୁ ॥ ( ଗମ୍ଭୀର ହୋଇ ) ହୁଁ । କାହିଁକି ?

କାକଳୀ ॥ ଆଜି, ଏଇନେ ସେମାନେ ଆସିଥିଲେ ।

ବାବ୍‌ଲୁ ॥ କାହିଁକି ?

କାକଳୀ ॥ ତାରାପଦ ମତେ ଏଠୁ ନେଇଯିବାକୁ ଚାହୁଁଚି ।

ବାବ୍‌ଲୁ ॥ ନା, ସିଏ ଶଳା କାହିଁକି ତତେ ନେବ ? ସେଇଟା ଗୋଟାଏ ପକ୍କା ବଦ୍‌ମାସ ।

କାକଳୀ ॥ ପୁଣି ମୋ' ଉପରେ ଅତ୍ୟାଚାର ଆରମ୍ଭ ହେବ ।

ବାବ୍‌ଲୁ ॥ ଅସମ୍ଭବ । ମୁଁ ଥାଉ ଥାଉ ତୋ'ଉପରେ କିଏ ହାତ ଦେଇ-ପାରିବନି ।

କାକଳୀ ॥ ତୁମେ ନ ଥିଲେ ? ସେଇଥିପାଇଁ ତୁମକୁ ପାଖରୁ ଛାଡ଼ିବା ପାଇଁ ଇଚ୍ଛା ହଉନି ।

ବାବ୍‌ଲୁ ॥ କିନ୍ତୁ ମୁଁ ତ ବର୍ତ୍ତମାନ ଯିବି । ତାରାପଦବାବୁ କହୁଚି ପାଞ୍ଚହଜାର ଟଙ୍କା ଦେବ । ମୁଁ ଜଙ୍ଗଲ ଘାଟିକୁ ଯାଇ ଅନ୍ୟ ପାର୍ଟିର ଜିପ୍‌ଟା ଗାଏବ କରିଦେବି । ବାସ୍, ଯେତିକି ।

କାକଳୀ ॥ ତୁମେ କାଲି ରାତିରେ ଏଠୁ ଉଠି କୋଉଠିକି ଯାଇଥିଲ ?

ବାବ୍‌ଲୁ ॥ ଗୋଟାଏ ବାକ୍ସ ନେଇ ନଈକୂଳରେ···

କାକଳୀ ॥ ଆଃ ! ( ଭୟରେ )

ବାବ୍‌ଲୁ ॥ ତୋର କ'ଣ ହେଲା ?

କାକଳୀ ॥ ହେମନ୍ତ ମହାପାତ୍ରଙ୍କୁ ଖୁନ୍ କରାଯାଇଚି ।

ବାବ୍‌ଲୁ ॥ କିଏ କହିଲା ?

କାକଳୀ ॥ ମୁଁ ସେମାନଙ୍କର ପ୍ଲାନ୍ ଜାଣେ । ତୁମେ ଯୋଉ ବାକ୍ସଟା ନେଇ ନଈକୂଳକୁ ଗଲ ସେଇଥିରେ ଆଉ ହେମନ୍ତବାବୁର ଦେହଟାକୁ ଖଣ୍ଡ ଖଣ୍ଡ କରି ରଖିଦେଇନାହାନ୍ତି ତ ?

ବାବ୍‌ଲୁ ॥ କେଜାଣି ଶଳା, ଖୁବ୍ ତ ଓଜନିଆ ଲାଗୁଥିଲା···କିନ୍ତୁ ସତରେ କ'ଣ ସେମିତି ସେମାନେ ମତେ ଠକିଦେଲେ ?

କାକଳୀ ॥ ତୁମେ ଶେଷକୁ ଧରାହେବ, ବାବ୍‌ଲୁ ! ସାବଧାନ ! ତାରାପଦର ଜାଲରେ ପଡ଼ନି କହୁଦଉଚି । ମୁଁ ସେମାନଙ୍କୁ ହାଡ଼େ ହାଡ଼େ ଜାଣେ ।

ବାବ୍‌ଲୁ ॥ ଶାଳା ହାରାମ୍‌ଜା'ଦା ତାରାପଦ ! ତାକୁ ମୁଁ ସିଧା କରୁଚି, ରୁହ ।

କାକଳୀ ॥ ତୁମେ ଆଜି ଗାଡ଼ି ନେଇ ଘାଟି ରାସ୍ତା ଉପରକୁ ଯାଅନି ।

ବାବ୍‌ଲୁ ॥ କାହିଁକି ? ମୁଁ ଏକ୍‌ସପର୍ଟ ଡ୍ରାଇଭର । ମୋ' ବାପାଙ୍କର ଗାଡ଼ି ଥିଲା । ପିଲାଦିନୁ ଗାଡ଼ି ଚଳେଇ ଶିଖିଚି ।

କାକଳୀ ॥ ନା, ସେମାନେ ଆଉ କିଛି ଷଡ଼ଯନ୍ତ୍ର କରିଥାଇପାରନ୍ତି ।

ବାବ୍‌ଲୁ ॥ ନା, ଏଗୁଡ଼ା ତୋର ମିଛ ଭୟ ।

କାକଳୀ ॥ ଯା' ହଉ, ମତେ ଭୟ ଲାଗୁଚି ।

ବାବ୍‌ଲୁ ॥ ଭୟର କାରଣ ନାହିଁ ।

କାକଳୀ ॥ ସେ ଯା' ହେଉ, ତମେ ଆଜି ଯାଅନି ।

ବାବ୍‌ଲୁ ॥ କାହିଁକି ? ମୁଁ ଅଲବତ୍ ଯିବି । ( ଗେଞ୍ଜି ଉପରେ ଗୋଟାଏ ସାର୍ଟ ପିନ୍ଧି ବାହାରି ଆସିଲା ସିଏ )

କାକଳୀ ॥ ( ଚିତ୍କାର କଲାଭଳି ) ନା, ତମେ ଯାଇ ପାରିବନି ।

( କାନ୍ଦୁ କାନ୍ଦୁ କାନ୍ଦି ପକେଇଲା କାକଳୀ )

ବାବ୍‌ଲୁ ॥ ହଠାତ୍ ଇଏ ତୋର କ'ଣ ହେଲା ?

କାକଳୀ ॥ କ'ଣ ହେଉଛି ମୁଁ ଜାଣିପାରୁନି । କିନ୍ତୁ···ତମକୁ ଛାଡ଼ିବା ପାଇଁ ଆଦୌ ଇଚ୍ଛା ହେଉନି ( ପାଖକୁ ଯାଇ ବାବ୍‌ଲୁକୁ ଧରନ୍ତି । ) ବାବ୍‌ଲୁ !

ବାବ୍‌ଲୁ ॥ କ'ଣ ?

କାକଳୀ ॥ ( ତା' ଆଖିରେ ଲୁହ ) ମୁଁ ତ ମରିବା ପାଇଁ ଯାଉଥିଲି । ହଠାତ୍ ତମେ ମତେ ବଞ୍ଚେଇଲ କାହିଁକି ?

ବାବ୍‌ଲୁ ॥ ଅଥଚ ଯିଏ ବଞ୍ଚେଇଲା ସିଏ ଗୋଟାଏ ଗୁଣ୍ଡା ।

କାକଳୀ ॥ ନା, ତମେ କେତେ ଭଲ । ଅନେକ ଭଲ !

ବାବ୍‌ଲୁ ॥ ତୁ'···ଏମିତି କାନ୍ଦୁଚୁ କାହିଁକି ?

କାକଳୀ ॥ କେଜାଣି···ଭୟରେ, ଖୁସିରେ, ଅବାକ୍ ହୋଇ···ନା, ମୁଁ ଜାଣେନା । ତମେ କହିପାରିବ ?

ବାବ୍‌ଲୁ ॥ ମୁଁ କେବେ ଭାଗ୍ୟରେ ବିଶ୍ୱାସ କରୁ ନ ଥିଲି । ତୋ' ସାଙ୍ଗରେ ଏଇ କେତେଘଣ୍ଟାର ପରିଚୟ କ'ଣ ଭାଗ୍ୟର ଖେଳ ?

କାକଳୀ ॥ ଆଉ ଗୋଟାଏ ଅଦେଖା ହାତ ନିଶ୍ଚୟ କାମ କରୁଚି ।

ବାବ୍‌ଲୁ ॥ ମୁଁ ଯିବି ।

କାକଳୀ ॥ ( ନୀରବ )

ବାବ୍‌ଲୁ ॥ ସେମାନଙ୍କଠୁ ଟଙ୍କା ନେଇଚି । ମତେ ଯିବାକୁ ହେବ ।

କାକଳୀ ॥ ପାଞ୍ଚହଜାର ଟଙ୍କା ପାଇଲେ ଅନେକ କାମ କରିହୁଅନ୍ତା ।

ବାବ୍‌ଲୁ ॥ କାକଳୀ ! ଚାଲ, ଆମେ ସେ ଟଙ୍କା ନେଇ ରାଉରକେଲା ପଳେଇବା ।

କାକଳୀ ॥ ଚାଲ । ତମେ ସନ୍ଧ୍ୟାରେ ଫେର ।

ବାବ୍‌ଲୁ ॥ ( ଲୁହ ପୋଛିଦେଇ ) ମୁଁ ଆସୁଚି । କାନ୍ଦିବୁନି ।

[ ବାବ୍‌ଲୁ ଚାଲିଗଲା ପରେ ସମସ୍ତ ପ୍ରବାହ ଦେଖେଇବାପାଇଁ ଓ ନାଟକର ଏଇ ଭାବାବେଗକୁ ଲମ୍ବେଇ ଧରିବାପାଇଁ ଆଲୁଅ ଓ ସଙ୍ଗୀତ ଉଭାସିବ । ତା'ପରେ ସନ୍ଧ୍ୟାର ପରିବେଶ । ପ୍ରବେଶ କରିଚ ଲକ୍ଷଣ ]

ଲକ୍ଷଣ ॥ ବ ବଲୁଭାଇ···ହେଁ···ହେଁ···( ଘର ଭିତରକୁ ପଶି ) ନାହାନ୍ତି ?

କାକଳୀ ॥ ଆସ, ରସିକ ମହାଜନ !

ଲକ୍ଷଣ ॥ ବସିବି ଖଟ ଉପରେ ?

କାକଳୀ ॥ ବସ । ଆଜି ପାଉଁରୁଟି ବିସ୍କୁଟ ଆଣିନ ?

ଲକ୍ଷଣ ॥ ଆଣି ଦେବି ? ହେଁ···ହେଁ···ତମେ ଏଇଠି ଅଛ ବୋଲି ମୁଁ ଜାଣିନି ।

କାକଳୀ ॥ ମୁଁ ପରା ଏଇଠି ରହିବାପାଇଁ ଆସିଚି ।

ଲକ୍ଷଣ ॥ ହେଁ···ହେଁ···ରହିବନି କାହିଁକି ? ତମେ ରହିଲା ପରେ ଏ ବସ୍ତି ଉଜଳ ହେଇଯାଇଚି । ତମେ···ହେଁ···ହେଁ···ଆମ ବସ୍ତିର କନ୍ୟା ।

କାକଳୀ ॥ ଭ୍ରାତୃଭକ୍ତ ଲକ୍ଷଣ ! ତମ ଭାଇଲାଗ ଯଦି ସରାଗ ଚେଇଲାର୍ ଶୁଣିବ ନା ମୁଣ୍ଡ ଫଟେଇଦେବ । କୁଆଡ଼େ ଆସିଥିଲ ?

ଲକ୍ଷଣ ॥ ବାବ୍‌ଲୁଭାଇକି ମୁଁ ଆସିଥିଲି ବୋଲି କହିବନି । ଗାଲ ଫଟେଇ-ଦେବ । ଏଇବାଟେ ଗଲାବେଳେ ମନେପଡ଼ିଗଲା···ହେଁ···ହେଁ···

କାକଳୀ ॥ ବାବ୍‌ଲୁଭାଇ ଏଇନେ ଫେରିବ । ତମେ ଦୋକାନ ବନ୍ଦ କରି ଘରକୁ ଫେରିଲାବେଳେ ଏଇବାଟେ ଆସିବ, ବୁଝିଲ ଲକ୍ଷଣ ?

ଲକ୍ଷଣ ॥ ହେଁ···ହେଁ···ନିଶ୍ଚୟ···ନିଶ୍ଚୟ ଆସିବି । କ'ଣ କାମ ଥିଲା ?

କାକଳୀ ॥ ଭାବୁଚି ଏ ବସ୍ତି ଭିତରେ ନ ରହି ଆଉ ଗୋଟାଏ ଭଲ ଘର ଦେଖିବି । ଘର···ଯୋଉଠି ଦୁଆର, ଝରକା, କାନ୍ଥ ଥିବ···ତାରି ଭିତରେ କୋଠରି···କୋଠରି ଭିତରେ ସ୍ନେହ, ପ୍ରେମ, ହସ ଆଉ ଲୁହ···                    ( ହସିଦେଇଚି )

ଲକ୍ଷଣ ॥ ଆମ ବସ୍ତି ଛାଡ଼ି ଚାଲିଯିବ ? ହେଁ···ହେଁ···ଆମେ ତମକୁ ଛାଡ଼ିବୁନି ।

କାକଳୀ ॥ ତା' ହେଲେ ଏଇଠି ଆଉ ଗୋଟାଏ ଘର ଦେଖ ।

ଲକ୍ଷଣ ॥ ଦେଖିବା···ତମେ କହୁଚ, ଦେଖିବାନି ! ମୁଁ ବୁଝିବି ତା'ହେଲେ । ଆସୁଚି । ତମେ କୁଆଡ଼େ ଯିବନି···ଏଁ··· !!

ଆମର ଆଉ କିଛି ଦରକାର ନାହିଁ···ଏମିତି ବୁଲି ଆସିଲେ ଟିକିଏ ହସ···ମିଠା କଥା ମିଳିଗଲେ ଯଥେଷ୍ଟ ।

[ ଲକ୍ଷଣ ଚାଲିଗଲା । କାକଲୀ ଖୁବ୍ ଖୁସିରେ ଗୁଣ୍ଗୁଣ୍ ହୋଇ ଗୀତ ଗାଉଛି । ଏଇ ଅବସ୍ଥାରେ ବାହାରୁ ପହଞ୍ଚିଛି ବାବ୍ଲୁ । ]

କାକଲୀ ॥ ଫେରିଆସିଲ ?

ବାବ୍ଲୁ ॥ ହଁ ।

କାକଲୀ ॥ ଘାଟି ରାସ୍ତା ଉପରୁ ଜିପ୍‌ଟାକୁ ଓଲଟେଇ ଦେଲ ? ତମ ହାତ ଥରିଲାନି । ତମ ବିବେକ ମନା କଲାନି ?

ବାବ୍ଲୁ ॥ ନା, କିଛି କରିନି । ତାଙ୍କ ଜିପ୍‌ଟାକୁ ସେମିତି ଛାଡ଼ିଦେଇଚି । ଶଳା ଗରିବ ଲୋକଗୁଡ଼ାକ କିଛି ଟଙ୍କା ପାଇଯା'ନ୍ତୁ ।

କାକଲୀ ॥ ସତ କହୁଚ ତମେ କୋଉଠି ଗଣ୍ଡଗୋଳ କରିନା ?

ବାବ୍ଲୁ ॥ ଇଚ୍ଛା ହେଲାନି । ମୁଁ ଏ ଧନ୍ଦା ଛାଡ଼ିଦେବା ପାଇଁ ପ୍ରତିଜ୍ଞା କରିଚି ।

କାକଲୀ ॥ ମୋ ରାଣ ?

ବାବ୍ଲୁ ॥ ତୋ' ରାଣ ।

କାକଲୀ ॥ ତମେ ଏଣିକି ସୁନା ପୁଅ ! ସତରେ···ମୋର ବିଶ୍ୱାସ ହଉନି । ଓଃ, ବାବ୍ଲୁ ! ତମେ ବିଶ୍ୱାସ କରିବନି ସତରେ ମୁଁ କେତେ ଖୁସି···( ଆନନ୍ଦର ଉଚ୍ଛ୍ୱାସରେ ଅଭିଭୂତ ହୋଇପଡ଼ିଛି ) ବାବ୍ଲୁ, ମୁଁ କାହାକୁ ଉପଦେଶ ଦେଲା ଭଳି ଝିଅ ନୁହେଁ··· ମୋର ନୈତିକ ଚରିତ୍ର ନାହିଁ···ମୁଁ ଖରାପ ହୋଇପାରେ···କିନ୍ତୁ ତମକୁ ଦେଖିଲାବେଳଠୁ କେମିତି ଗୋଟାଏ ମମତା ଲାଗିଯାଇଚି । ( ପୁଣି ଆନନ୍ଦରେ ଉଚ୍ଛ୍ୱସିତ ହୋଇ ) ବେଶ୍, ମୋ' କାମ ଶେଷ ।

[ ଉପରୋକ୍ତ କଥାଗୁଡ଼ିକ କହିଲାବେଳେ କାକଲୀ ଆଖିରୁ ଲୁହ ଝରିପଡ଼ୁଚି । ]

ବାବ୍ଲୁ ॥ ମୁଁ ଯେତେବେଳେ ଘାଟି ରାସ୍ତା ଉପରେ ପିସ୍ତଲଟା ଧରି ଫାୟାର୍ କରିବା ପାଇଁ ଅପେକ୍ଷା କରିଥିଲି, କେଜାଣି କେମିତି ଶଳା ତୋ' ମୁହଁଟା ମତେ ଦିଶିଲା । ତା'ପରେ···ମୁଁ ଦୁର୍ବଳ ହେଇପଡ଼ିଲି··· କିଛି କରିପାରିଲିନି ।

କାକଲୀ ॥ ମତେ ତମେ ଅନେକ ସମ୍ମାନ ଦେଇଚ, ବାବ୍ଲୁ ! ମୁଁ ଜୀବନରେ ତମର ସାହାଯ୍ୟ ଭୁଲିପାରିବିନି । ଆଉ କିଏ ହୋଇଥିଲେ ଏଇ ସମୟ ଭିତରେ ହୁଏତ ମୋ' ଦେହଟାକୁ ଚୋବାଇଥାନ୍ତା । ତମେ ମତେ ବଗିଚାର ଫୁଲ ଭଳି ନ ତୋଳି ଛାଡ଼ିଦେଇଚ । ମୁଁ ତମ ପାଖରେ କୃତଜ୍ଞ ।

ବାବ୍‌ଲୁ ॥ କେଜାଣି ··ଏଥିରୁ ମୁଁ କିଛୁ ବୁଝିପାରେନା । ତୁ' ଟିକିଏ ଅପେକ୍ଷା କର । ତାରାପଦବାବୁଙ୍କୁ ମୁଁ ଗାଡ଼ିଟା ଫେରେଇ ଦେଇ ଆସିବି ।

କାକଳୀ ॥ କିଛୁ କରିବା ବୋଲି ଜଣେଇଦେବ ?

ବାବ୍‌ଲୁ ॥ ନା, କିଛୁ କହିବା ଦରକାର ନାହିଁ । ତାଙ୍କୁ କହିବି, ମୁଁ ଜବ୍ ଓଲଟେଇ ଦେଇଛି ଏବଂ ମୋର ପାଞ୍ଚ ହଜାର ନେଇ ଚାଲି-ଆସିଛି ।

କାକଳୀ ॥ ତାରାପଦବାବୁ କାଲି ଖବର ପାଇବ । ସବୁ ଜାଣିପକେଇବ ।

ବାବ୍‌ଲୁ ॥ ତା' ପୂର୍ବରୁ ଆମେ ଏଇ ସହର ଛାଡ଼ି ଚାଲିଯାଇଥିବା ।

କାକଳୀ ॥ ସତରେ ଯିବା ? କେତେବେଳେ ?

ବାବ୍‌ଲୁ ॥ ଆଠଟା ପନ୍ଦର ମିନିଟ୍‌ରେ ଟ୍ରେନ୍ । ତୁ ପ୍ରସ୍ତୁତ ହୋଇ ରହିଥା'—

[ ବାବ୍‌ଲୁ ଚାଲିଗଲା ପରେ ଗୁଣୁଗୁଣୁ ହୋଇ ଗୀତ ଗାଉଚି କାକଳୀ । ତା'ପରେ ଭିତର ଘରକୁ ଯାଇ ବେଡ଼ିଙ୍ଗ୍ ଓ ବାକ୍ସ ସଜାଡ଼ିବାରେ ଲାଗିଲା । ହଠାତ୍ ଧଡ଼୍ କରି ଖୋଲିଗଲା ବାହାର ଦରଜା ଓ ସେଇଠି ପଶିଲା ଦୀପେନ୍ । ଆସ୍ତେ ଆସ୍ତେ ଗଲା କାକଳୀ ପାଖକୁ । ହାତରେ ଏକ ତୀକ୍ଷ୍ଣ ଛୁରୀ । ତା'ପରେ ଗୋଟିଏ ହିଂସ୍ର ବାଘ ତାର ଶିକାର ଉପରକୁ ଡେଇଁଲା ପରି ମାଡ଼ିବସିଛି କାକଳୀ ଉପରେ । କେବଳ ଗୁଡ଼ାଏ ଗଁ ଗଁ ଶବ୍ଦ ଓ ଚିତ୍କାର ଶୁଭୁଥିଲା ଏବଂ ମଦ ଖାଇ ସମ୍ପୂର୍ଣ୍ଣ ଟଳଟଳ ଅବସ୍ଥାରେ ଦାଣ୍ଡଘରକୁ ଆସିଲାବେଳକୁ ଦୀପେନ୍‌ର ଦେହ ଥରୁଚି । ]

ଦୀପେନ୍ ॥ ମର୍ ଶାଳୀ ଟୋକୀ ! ବାବ୍‌ଲୁ ପାଖରେ ମୁଣ୍ଡ ଗୁଞ୍ଜି ରକ୍ଷା ପାଇଯିବ ! ଆଃ, ଶଳା ହାରାମ୍‌ଜାଦା ବାବ୍‌ଲୁ !! ତତେ ବି ଦେଖି ନବାକୁ ପଡ଼ିବ ଯା'ର ଭିତରେ···ପୃଥିବୀର ଯୋଉ କୋଣରେ ଥିଲେ ବି··· ବଜାତ ଟୋକା !!

କାକଳୀ ॥ ଦୀପେନ୍ ! ମତେ ଛାଡ଼ିଦିଅ···ମୁଁ···

( ଦୀପେନ୍‌ର ଗୋଡ଼ତଳେ ପଡ଼ିଯାଇଛି )

ଦୀପେନ୍ ॥ ନା, ମୁଁ ଜେଲ୍‌ରୁ କାନ୍ଥ ଡେଇଁ ଆସିଛି । ତୋ' ଦେହର ରକ୍ତରେ କେତେ କୀଟ ମୁଁ ଗଣିବାକୁ ଚାହୁଁଚି । ପ୍ରତାରଣା କଲେ ଏମିତି ତାର ହିସାବ ଦେବାକୁ ପଡ଼େ ।

ଃ ସ୍ୱତପଠି ଃ

[ କାକଲୀ ସେମିତି ତା'ର ଗୋଡ଼ ଧରି ପଡ଼ିଥିବା ବେଳେ ଧୀପେନ୍ ଛୁରୀଟା ନେଇ ଭୁଷିଦେଇଛି ଏବଂ ପଛକୁ ନ ଅନେଇ ଚାଲିଯାଇଛି । କାକଳୀ ଘୁଷୁରି ଘୁଷୁରି ଯାଇ ଜାବୁଡ଼ି ଧରିଛି ବାବଲୁର ଖଟର ଗୋଟାଏ ଗୋଡ଼କୁ···ଠିକ୍ ସେତିକବେଳେ ବାହାରୁ ଆସିଚି ବାବ୍‌ଲୁ ]

ବାବ୍‌ଲୁ ॥ କାକଳୀ ! ଟଙ୍କା ନେଇ ମୁଁ ଆସିଗଲି । କାକଳୀ ! ( ହଠାତ୍ ତାର ଆଖି ପଡ଼ିଯାଇଛି କାକଳୀ ଉପରେ । ଚିତ୍କାର କରି ଉଠିଚି ) ନା···କିଏ···?

କାକଳୀ ॥ ବାବ୍‌ଲୁ !

ବାବ୍‌ଲୁ ॥ କିଏ ମାରିଚି ? ଧୀପେନ୍ ? ଧୀପେନ ଆସିଥିଲା··· ?

କାକଳୀ ॥ ବଞ୍ଚେଇ ଦେବା ପାଇଁ ଅନେକ ଅନୁରୋଧ କଲି···ଶୁଣିଲାନି···ଆଃ !!

ବାବ୍‌ଲୁ ॥ କାକଳୀ ! ( ଛୁରୀଟା ବାହାର କରିବାକୁ ଯାଉଥିଲା )

କାକଳୀ ॥ ନା, ଥାଉ । ମୁଁ ଯେମିତି ହେଲେ ମରିଆନ୍ତି···ତେବେ···

ବାବ୍‌ଲୁ ॥ ବର୍ତ୍ତମାନ ମୁଁ···କ'ଣ କରିବି କାକଳୀ ?

କାକଳୀ ॥ ମତେ ଟିକିଏ ଧର ବାବ୍‌ଲୁ···

ବାବ୍‌ଲୁ ॥ ( ନଇଁପଡ଼ିଚି କାକଳୀ ଉପରେ ) କାକଳୀ !

କାକଳୀ ॥ ଆଉଟିକେ ଜୋର୍‌ରେ···

ବାବ୍‌ଲୁ ॥ କାକଳୀ !!

କାକଳୀ ॥ ତମେ ଗୋଟାଏ ସାଧାରଣ ମଣିଷ ହେଇଯାଅ ବାବ୍‌ଲୁ··· ବିଦାୟ ଦିଅ ।

ବାବ୍‌ଲୁ ॥ କାକଳୀ !!

[ କାକଳୀକୁ ଉଠେଇ ଧରିଚି । ଆଖିରେ କରୁଣତା ]

ତୁ ମତେ ମଣିଷମାନଙ୍କ ଭିତରକୁ ଫେରେଇ ଆଣିଲୁ, କାକଳୀ ! ମୁଁ କିନ୍ତୁ ତତେ ବଞ୍ଚେଇ ପାରିଲିନି । ( ଚିତ୍କାର କରି ) ମୁଁ କିନ୍ତୁ ଏଣିକି ସାଧାରଣ ମଣିଷ ହେଇପାରିବିନି । ମତେ ପୁଣି ଫେରିଯିବାକୁ ପଡ଼ିବ ଅପରାଧର ଜଗତ ଭିତରକୁ···ତା' ଭିତରକୁ ଯିବାକୁ ଧୀପେନ୍ ତୁ' ମତେ ବାଧ୍ୟ କରୁଛୁ ! ମୁଁ ଅନ୍ଧାର ଚାହେଁ···!! ତା'ପରେ ମୋ' ବାଟ ସଫା···

[ ଧୀରେ ଧୀରେ ଆଗେଇ ଯାଉ ଯାଉ ଅନ୍ଧାର ]

